# "ଯାକୁ ବନେଇବା ପିଲାଙ୍କ ଖେଳ ବାହାରି କରିଲେ ଲାଗେନା ବେଳ"

–ଫେଭି ଫେ




ପ୍ରଜାପତି କେମିତି ବନେଇବ, ସେ ସମ୍ପର୍କୀୟ ମାଗଣା ନିର୍ଦ୍ଦେଶାବଳୀ
ପାଇବାକୁ ଏହି କୁପନଟି ଭରି ଡାକରେ ପଠାଅ କିମ୍ବା ଲେଖ :
"ଫେଭି ଫେରୀ", ପୋଷ୍ଟ ବାକ୍ସ ୧୧୦୮୪, ବମ୍ବେ ୪୦୦ ୦୨୦ ।



# ଜହ୍ନମାମୁଁ

ସେପ୍ଟେମ୍ବର ୧୯୮୭



## ବିଷୟ-ସୂଚୀ





ପ୍ରତି ସଂଖ୍ୟା : ୨-୫୦
ବାର୍ଷିକ ମୂଲ୍ୟ : ୩୦-୦୦

# ଜହ୍ନମାମୁଁ

ସଂସ୍ଥାପକ : 'ଚକ୍ରପାଣୀ'
ସଞ୍ଚାଳକ : ନାଗି ରେଡ୍ଡୀ

ଉପରକୁ ଆମ ଆଖିକୁ ଯାହା ଦେଖାଯାଏ, ତାହା ସତ୍ୟଠାରୁ ବହୁତ ପୃଥକ୍ ହୋଇପାରେ । ସେହିପରି ଉପରକୁ ସାଧାରଣ ବୋଲି ମନେ ହେଉଥିବା ଲୋକଟିଏ ଭିତରେ ଖୁବ୍ ସତ ସାହସୀ ହୋଇପାରେ । ଉପରକୁ ଜଣେ ସାହସୀ ବୋଲି ଜଣା ଯାଉଥିବା ସ୍ଥଳେ ପ୍ରକୃତରେ ସେ ଭୀରୁ ହୋଇଥାଇ ପାରେ । ଏ ସଂଖ୍ୟାର ବେତାଳ କାହାଣୀ ଏହି ଏକ ସୂଚାଇ ଦେଉଛି ।

## ଅମରବାଣୀ

ଲୋକ ଯାତ୍ରା ନୟୋଲଜ୍ଜା, ଦାକ୍ଷିଣ୍ୟଂ ତ୍ୟାଗଶୀଲତା ।
ପଞ୍ଚ ଯତ୍ର ନ ବିଦ୍ୟନ୍ତେ, ନ ତତ୍ର ଦିବସଂ ବସେତ୍ ॥

[ଯେଉଁଠି ଜୀବିକାର୍ଜନର ସୁବିଧା ନାହିଁ, ଯେଉଁଠି ଭୀତ, ଲଜ୍ଜା, ଦାକ୍ଷିଣ୍ୟ ଓ ତ୍ୟାଗ ଭାବ ନାହିଁ, ସେଠି ଦିନଟିଏ ବି ରହିବା ଉଚିତ ନୁହେଁ ।]

ବର୍ଷ : ୨୧ ସେପ୍ଟେମ୍ବର ୧୯୮୭ ଅଙ୍କ : ୩

ପ୍ରତି ସଂଖ୍ୟା : ଟ. ୨.୫୦ :: ବାର୍ଷିକ ମୂଲ୍ୟ : ଟ. ୩୦-୦୦

CHANDAMAMA PUBLICATION



ରବି ଅତି ଗୁଣିଆ ପିଲ, ସିଏ ସବୁରି ଗେଲା
କମିକ୍ ସବୁ ପଢ଼ିସାରିଲାଣି ଖେଳଖେଳଟା ପୁରୁଣା ହେଲା॥
ନିତି ନିତି ନୂଆ ମଜା କିଏବା ଦବ ଭଲା
ହେଙ୍ଗି, ପାଇଁ ସ୍ଥିର କଲା, ନିଜ ବାକ୍ସ ଦରାଣ୍ଡିଲା ॥

ଏକ୍କୋ ପେନ ସେଟ୍ କାଢ଼ି, ଆଣିଲା କାଗଜ
ଜାତୀୟ ପକ୍ଷୀ ମୟୂର ଆଙ୍କି, ଘଙ୍କ କଲା ସଜବାଜ ।
ବିଜ୍ଞାନ ଯୁଗର ସୁତ ସିଏ, କଲ ରକେଟ, ଉଡ଼ାଯାହାଜ
ନିଜ ନୂଆ ଭିଆଣ ଦେଖି, ହରେ ନାହିଁ ଧୈର୍ଯ୍ୟ ॥

ଏକ୍କୋ ଅତି ଉପଯୋଗୀ, ସାଗୁଆ, ନେଳିଆ
ବାଦାମୀ, ହଳଦି ସୁନ୍ଦ ପାଟଳ, ନାଲିଆ ।
ଭାଓଲେଟ୍, ବାଇଗଣି ଆଉ ନାରଙ୍ଗି, କାଳିଆ
ତମ ଲାଗି ପ୍ରତି ସେଟ୍ ଯେ ଦଶ ରଙ୍ଗିଆ ॥

# ଏକ୍କୋ
## ସ୍କେଚ୍ ପେନ

**ରଙ୍ଗ ରାଇଜରେ ତମେ ହୁଅ ରଜା - ରଙ୍ଗେଇ, ଚିତ୍ରେଇ ମିଳେ କେତେ ମଜା !**

ପ୍ରିମିଅର ରାଇଟିଙ୍ଗ ପ୍ରଡକ୍ଟସ ପ୍ରାଇଭେଟ ଲିମିଟେଡ, ୧୮, ସୁଭାଷ ରୋଡ଼, ଭିଲେ ପାର୍ଲେ (ପୂର୍ବ), ବମ୍ବେ ୪୦୦ ୦୫୭.
ଟେଲିଫୋନ : ୬୦୪୦୩୦୫, ୬୦୪୩୫୫୭



# ଜହ୍ନମାମୁଁ ସମ୍ବାଦ-ବିଚିତ୍ରା



## ଫୁଲର ସଙ୍ଗୀତ

ଜାପାନୀମାନେ ଏଭଳି ଉପାୟ ବାହାର କରିଛନ୍ତି, ଯାହା ଦ୍ୱାରା ଗୋଟିଏ ଫୁଲ ଯେଉଁ ସୂକ୍ଷ୍ମ ତରଙ୍ଗ ସୃଷ୍ଟି କରୁଥାଏ, ତାହାକୁ ସୁରରେ ପରିଣତ କରାଯାଇ ପାରିବ। ଏକ ପ୍ରକାର କମ୍ପ୍ୟୁଟର୍ ଦ୍ୱାରା ତାହା ସମ୍ଭବ। ଅବଶ୍ୟ ଏ ଦିଗରେ ପରୀକ୍ଷା ଏ ପର୍ଯ୍ୟନ୍ତ ପ୍ରାଥମିକ ସ୍ତରରେ ଅଛି, ତଥାପି ଏହାର ଭବିଷ୍ୟତ ଉଜ୍ଜ୍ୱଳ।

## ବିଂଶ ଭାଷାର ଅଭିଧାନ

୨୮ଟି ଦେଶର ଶହେଜଣ ଭାଷାବିତ୍‌ଙ୍କ ସହଯୋଗରେ ହଙ୍ଗେରୀର ଗୋଟିଏ ପ୍ରତିଷ୍ଠାନ ୨୦ଟି ଭାଷାରେ ପ୍ରତି ଶବ୍ଦର ଅର୍ଥ ଥିବା ଅଭିଧାନଟିଏ ପ୍ରସ୍ତୁତ କରିଛନ୍ତି।




## ପକ୍ଷୀଙ୍କ ଆତ୍ମହତ୍ୟା ?



ମହାରାଷ୍ଟ୍ରର ଥାନେ ଜିଲ୍ଲାରେ ଥିବା ମାଲସେଜ୍ ଘାଟ ପର୍ବତର ଏକ ଘାଟିରେ ଭିନ୍ନ ଭିନ୍ନ ପ୍ରକାରର ଶହ ଶହ ପକ୍ଷୀ ବର୍ଷର ଏକ ନିର୍ଦ୍ଦିଷ୍ଟ ସମୟରେ ଆସି ପ୍ରାଣ ବିସର୍ଜନ ଦିଅନ୍ତି। ଭୀଷଣ ପବନ ଓ କୁହୁଡ଼ି ଭିତରେ ସେମାନେ ପର୍ବତ ଶିଖର ଓ ଗଛ ଡାଳରୁ ଏ ଘାଟି ଭିତରକୁ ଖସି ପଡନ୍ତି।

## ବିସ୍ମୃତ ସମାଧି

ଦ୍ୱିତୀୟ ମହାଯୁଦ୍ଧ ବେଳେ ରୁଷିଆରେ ଥିବା ଜଣେ ଭାରତୀୟ ଡ: ତେଜା ସିଂହଙ୍କର ତରୁଣ ପୁଅ ବୋରିସ ନାଜୀ ଆକ୍ରମଣକାରୀଙ୍କ ବିରୁଦ୍ଧରେ ଯୁଦ୍ଧ କରି ପ୍ରାଣ ଦେଇଥିଲି। ଏହି ବୀର ବାଳକର ସମାଧି ଦୈବାତ୍ ଲିଥୁଆନିଆର କେତେକ ସ୍କୁଲ ଛାତ୍ର ଆବିଷ୍କାର କରିଛନ୍ତି। ବୋରିସ ସିଂହଙ୍କର ମା ଏଯାଏ ଉଜ୍‌ବେକିସ୍ଥାନରେ ରହିଛନ୍ତି।



# କ୍ଷେମା

ସାଗଲ ରାଜ୍ୟର ତରୁଣୀ ରାଣୀ କ୍ଷେମା ଅତ୍ୟନ୍ତ ସୁନ୍ଦରୀ ଥିଲେ । ସେ ପାଇଁ ସେ ବହୁତ ଗର୍ବ କରୁଥିଲେ ।

ତାଙ୍କ ସ୍ୱାମୀ ବୁଦ୍ଧଦେବଙ୍କ ଶିଷ୍ୟତ୍ୱ ଗ୍ରହଣ କଲେ । ସ୍ୱାମୀଙ୍କ ଇଚ୍ଛା, କ୍ଷେମା ଥରେ ବୁଦ୍ଧଙ୍କୁ ଭେଟନ୍ତୁ । କିନ୍ତୁ କ୍ଷେମା ବୁଦ୍ଧଙ୍କ ପାଖକୁ ଯିବାକୁ ପ୍ରସ୍ତୁତ ନଥିଲେ । ବୁଦ୍ଧଦେବଙ୍କ ପ୍ରତି ଯେ ତାଙ୍କର ସମ୍ମାନ ନଥିଲା, ତାହା ନୁହେଁ । କିନ୍ତୁ କାଳେ ବୁଦ୍ଧ ତାଙ୍କ ପ୍ରତି ବିଶେଷ ଧ୍ୟାନ ଦେବେ ନାହିଁ, ଏହାହିଁ ଥିଲା ତାଙ୍କର ଭୟ । ସେ ଶୁଣିଥିଲେ କି ବୁଦ୍ଧ ଦୈହିକ ସୌନ୍ଦର୍ଯ୍ୟର କୌଣସି ମୂଲ୍ୟ ଦେଉ ନଥିଲେ ।

ଅବଶ୍ୟ ଥରେ ଥରେ କ୍ଷେମା ମନେ ମନେ ଭାବୁଥିଲେ, ବୁଦ୍ଧ କଣ ତାଙ୍କ ଭଳି ସୁନ୍ଦରୀ କେବେ ଦେଖିଥିବେ ?

ଦିନେ ବସନ୍ତ ଋତୁରେ ଜଣେ ଚାରଣ କବି ବେଣୁବନ ନାମକ ଉଦ୍ୟାନର ସୌନ୍ଦର୍ଯ୍ୟ ଗାନ କରୁଥିବାର ରାଣୀ ଶୁଣିଲେ । ସେ ବେଣୁବନ ଦେଖିବା ନିମନ୍ତେ ସେଠାକୁ ଗଲେ ।

ସେଦିନ ବୁଦ୍ଧଦେବ ଯେ ବେଣୁବନରେ ଥିଲେ, ଏକଥା ସେ ଜାଣି ନଥିଲେ । ରାଣୀ ଦେଖିଲେ, ତାଙ୍କଠୁଁ ବହୁ ଗୁଣ ଅଧିକ ସୁନ୍ଦରୀ ନାରୀଟିଏ ବୁଦ୍ଧଙ୍କ ପାଖରେ ରହି ପଂଖା ଚାଳନ କରୁଛି । ରାଣୀ ଆଶ୍ଚର୍ଯ୍ୟ ହୋଇ ସେ ନାରୀ ଆଡେ ଅନାଇଛନ୍ତି, ଦେଖିଲେ ତାଙ୍କ ଆଖି ଆଗରେ ସେ ନାରୀ କ୍ରମେ ଯୌବନ ଅତିକ୍ରମ କରି ବୃଦ୍ଧା ହେଲା ଓ ଅଦୃଶ୍ୟ ହୋଇଗଲା ।

ବୁଦ୍ଧ ତାଙ୍କ ମାୟା ଦ୍ୱାରା ଦେଖାଇ ଦେଲେ ଦୈହିକ ସୌନ୍ଦର୍ଯ୍ୟ ଓ ଯୌବନ କେତେ କ୍ଷଣସ୍ଥାୟୀ । ରାଣୀଙ୍କ ସୌନ୍ଦର୍ଯ୍ୟ ଗର୍ବ ଖର୍ବ ହେଲା । ସେ ବୁଦ୍ଧଙ୍କ ଶିଷ୍ୟତ୍ୱ ଗ୍ରହଣ କଲେ ।





# ସାପୁଆ କେଳା

ଅନଙ୍ଗ ଦେଶର ପୁଣ୍ୟପ୍ରାଣ ରାଜାଙ୍କ ମୃତ୍ୟୁ ପରେ ତାଙ୍କ ଜ୍ୟେଷ୍ଠପୁତ୍ର ଜୟକୁମାର ସିଂହାସନ ଆରୋହଣ କଲେ । ରାଜାଙ୍କ କନିଷ୍ଠ ପୁତ୍ର ପ୍ରଦ୍ୟୁମ୍ନ ସର୍ବଦା ବଡ଼ଭାଇଙ୍କୁ ରାଜକାର୍ଯ୍ୟରେ ସାହାଯ୍ୟ କରୁଥାନ୍ତି । କୌଣସି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ପ୍ରଦ୍ୟୁମ୍ନଙ୍କ ପରାମର୍ଶ ବିନା ରାଜା କରୁ ନଥିଲେ ।

ଦୁଇ ଭାଇଙ୍କ ଭିତରେ ସଖ୍ୟଭାବ ଯୋଗୁଁ ରାଜକାର୍ଯ୍ୟ ଯେପରି ସୁରୁଖୁରୁରେ ଚାଲିଥାଏ, ଲୋକେ ବି ସେହିପରି ଖୁସି ହେଉଥାନ୍ତି । କଥାରେ କଥାରେ ଲୋକେ ସେ ଦୁଇଭାଇଙ୍କ ଭିତରେ ଥିବା ସୌଖ୍ୟ ଭାବର ଉଦାହରଣ ଦେଉଥାନ୍ତି । ନିଜ ପିଲାମାନଙ୍କୁ ସେ ଦୁହିଁଙ୍କ ଦୃଷ୍ଟାନ୍ତ ଅନୁସରଣ କରିବାକୁ କହୁଥାନ୍ତି ।

ସାରା ଦିନ ରାଜକାର୍ଯ୍ୟରେ ବ୍ୟସ୍ତ ରହିବା ପରେ ଗୋଧୂଳି ସମୟରେ ଦୁଇ ଭାଇ ଉଦ୍ୟାନରେ ପଦଚାରଣା କରୁଥାନ୍ତି । ସେତେବେଳେ ସେମାନେ ନାନା ବିଷୟରେ ଗପସପ ହୁଅନ୍ତି ।

ସେ ଉଦ୍ୟାନ ଉଆସ ପରିସର ଭିତରେ ଅବସ୍ଥିତ ଥାଏ । ଉପଯୁକ୍ତ ମାଳୀମାନେ ତାହାର ତତ୍ତ୍ୱ ନେଉଥାନ୍ତି । ସବୁଦିନ ସେ ସ୍ଥାନ ସଫାସୁତୁରା କରି ରଖା ହେଉଥାଏ । ରାଜା ନିରାପଦରେ ତହିଁ ଭିତରେ ବୁଲି ପାରୁଥିଲେ ।

ଥରେ ପ୍ରଦ୍ୟୁମ୍ନ କୌଣସି ବିଶେଷ କାମରେ ପଡ଼ୋଶୀ ରାଜ୍ୟକୁ ଯାଇଥାନ୍ତି । ରାଜା ଜୟକୁମାର ସେଦିନ ଏକାକୀ ଉଦ୍ୟାନରେ ବୁଲୁଥାନ୍ତି ।

ସୂର୍ଯ୍ୟ ଅସ୍ତଗଲେ । ଧୀରେ ଧୀରେ ଚତୁର୍ଦ୍ଦିଗ ଅନ୍ଧାର ହୋଇ ଆସିଲା । ରାଜା ଜୟକୁମାର ଉଦ୍ୟାନ ଛାଡ଼ି ପ୍ରାସାଦ ଭିତରକୁ

ଆପଣା ହସ୍ତେ ଜିହ୍ୱା ଛେଦି; କେ ତା'ର ଅଛି ପ୍ରତିବାଦୀ !

ଆସୁଛନ୍ତି, ହଠାତ୍ ଗୋଟିଏ କଳା ନାଗ ତାଙ୍କୁ ଦଂଶନ କରି କୁଆଡ଼େ ଲୁଚିଗଲା । ରାଜା ଚିତ୍କାର କରି ତଳେ ପଡ଼ିଗଲେ ଓ ଯନ୍ତ୍ରଣାରେ ଛଟପଟ ହେବାକୁ ଲାଗିଲେ । ଦୈବକୁ ରାଜବୈଦ୍ୟ ପାଖରେ ଥିଲେ । ସେ ଅତ୍ୟନ୍ତ ପୋଖତ ଚିକିତ୍ସକ ! ସେ ତତ୍କ୍ଷଣାତ୍ ଉଦ୍ୟାନ ଭିତରୁ କିଛି ଔଷଧ ଆଣି ରାଜାଙ୍କୁ ସେବନ କରାଇଲେ । ରାଜା ଅବଶ୍ୟ ମୃତ୍ୟୁ ମୁଖରୁ ବର୍ତ୍ତିଗଲେ, କିନ୍ତୁ ସେ ଅସାଡ଼ ହୋଇ ରହିଲେ ।

ମନ୍ତ୍ରୀ ଆସି ସମସ୍ତଙ୍କୁ ପ୍ରଶ୍ନ କଲେ : "ଆଜି ପର୍ଯ୍ୟନ୍ତ ରାଜୋଦ୍ୟାନ ଭିତରେ ସାଧାରଣ ସାପଟିଏ ମଧ୍ୟ ଦେଖାଯାଇ ନଥିଲା । ହଠାତ୍ କଳା ନାଗ କୁଆଡ଼ୁ ଆସିଲା ?" ତାଙ୍କ ପ୍ରଶ୍ନ କରିବାର ଢଙ୍ଗରୁ ମନେ ହେଉଥାଏ, ସାପ ଦେଖାଦେବା ପଛରେ ଯେପରିକି କୌଣସି ରହସ୍ୟ ଅଛି ।

ପରଦିନ ମନ୍ତ୍ରୀ ସବୁ ଅମାତ୍ୟଙ୍କୁ କହିଲେ, "ରାଜାଙ୍କୁ ସର୍ପ ଦଂଶନ କରିବା ପଛରେ ଜଣେ ଅତ୍ୟନ୍ତ ବିଶିଷ୍ଟ ବ୍ୟକ୍ତିର ଚକ୍ରାନ୍ତ ଅଛି ବୋଲି ମୁଁ ପ୍ରମାଣ ପାଇଛି । ସେ ବ୍ୟକ୍ତି ଯେତେ ବଡ଼ ହେଲେ ମଧ୍ୟ ତାଙ୍କୁ ପ୍ରାଣଦଣ୍ଡ ମିଳିବା ଆବଶ୍ୟକ । ଆପଣମାନେ କ'ଣ କହୁଛନ୍ତି ?"

"ନିଶ୍ଚୟ, ନିଶ୍ଚୟ ! ସେଭଳି ନରାଧମ ପାଇଁ ପ୍ରାଣଦଣ୍ଡ ନ ମିଳିଲେ ମିଳିବ କାହାକୁ ?" ଅମାତ୍ୟମାନେ ସମସ୍ୱରରେ କହିଲେ ।

ସମସ୍ତଙ୍କ ମନରେ ଗଭୀର କୌତୂହଳ ସହିତ ଉତ୍କଣ୍ଠା ଦେଖାଦେଲା । ଏଡ଼େ ଉପଯୁକ୍ତ ରଜାଙ୍କୁ ହତ୍ୟା କରିବା ଚକ୍ରାନ୍ତ କିଏ କଲା ?



ମନ୍ତ୍ରୀ କାହାକୁ ସନ୍ଦେହ କରୁଛନ୍ତି ? ସମସ୍ତେ ନିଜ ନିଜ ଭିତରେ ଏହି କଥା ଆଲୋଚନା କରିବାକୁ ଲାଗିଲେ । ଯୁଆଡ଼େ ଦେଖିବ, ଦୁଇ ତିନିଜଣ ଠିଆ ହୋଇ ଚୁପ୍ ଚୁପ୍ କଥା ହେଉଛନ୍ତି ।

ଦୁଇଦିନ ପରେ ପ୍ରଦ୍ୟୁମ୍ନ ଆସି ପହଞ୍ଚିଲେ । ବଡ଼ଭାଇଙ୍କ ଅବସ୍ଥା ଦେଖି ସେ ଅତ୍ୟନ୍ତ କାତର ହୋଇ ପଡ଼ିଲେ । ବୈଦ୍ୟଙ୍କ ସହ ପରାମର୍ଶ କରି ସେ କଳିଙ୍ଗରୁ ଜଣେ ଅତି ବିଖ୍ୟାତ ବୈଦ୍ୟଙ୍କୁ ଅଣାଇବାର ବ୍ୟବସ୍ଥା କଲେ ।

ମନ୍ତ୍ରୀ ରାଜାଙ୍କୁ ସର୍ପ ଦଂଶନ କରିବା ବିଷୟରେ କୌଣସି ତଦନ୍ତ ଅଛି ବୋଲି ଅମାତ୍ୟମାନଙ୍କୁ କହିଥିବା କଥା ପ୍ରଦ୍ୟୁମ୍ନ ଶୁଣିଲେ । ସେ ଦିଗରେ ସେ ଥରେ ମନ୍ତ୍ରୀଙ୍କୁ ପ୍ରଶ୍ନ କଲେ ମଧ୍ୟ । "ପରେ ସବୁ ଜାଣିବେ !" ମନ୍ତ୍ରୀ କେବଳ ଏତିକି କହିଲେ । ମନ୍ତ୍ରୀ ଯେ ସବୁ ବିଷୟ ପ୍ରଥମେ ତାଙ୍କୁ ଜଣାଇବା ଉଚିତ, ସେକଥା ସେ କହିପାରିଥାନ୍ତେ । କିନ୍ତୁ ପ୍ରଦ୍ୟୁମ୍ନ ଥିଲେ ଅତ୍ୟନ୍ତ ନମ୍ର ଓ ଭଦ୍ର । ତା'ଛଡ଼ା ସେତେବେଳେ ନାଗସାପ ରହସ୍ୟ ଉଦ୍‌ଘାଟନ ଅପେକ୍ଷା ଅଧିକ ଗୁରୁତର ବ୍ୟାପାର ଥିଲା ତାଙ୍କ ଭାଇଙ୍କ ସ୍ୱାସ୍ଥ୍ୟ । ପ୍ରଦ୍ୟୁମ୍ନ ରାଜାଙ୍କ ପାଇଁ ଯେପରି ସର୍ବୋତ୍କୃଷ୍ଟ ଚିକିତ୍ସାର ବ୍ୟବସ୍ଥା ହୋଇପାରେ, ସେଥିରେ ମନୋନିବେଶ କରିଥାନ୍ତି । ଅନ୍ୟ କିଛି ସମସ୍ୟା ପ୍ରତି ତାଙ୍କର ମନ ଯାଉ ନଥାଏ ।

ଏଣେ ସେଦିନ ସନ୍ଧ୍ୟାବେଳେ ମନ୍ତ୍ରୀଙ୍କର ଜଣେ ବିଶ୍ୱସ୍ତ ବ୍ୟକ୍ତି ଗୋଟିଏ ସାପୁଆ କେଳକୁ





ଗୋପନରେ ଡାକିନେଇ ଆସିଲା । ମନ୍ତ୍ରୀ ତାକୁ କହିଲେ, "ଖୋକା, ତୋ ଭାଗ୍ୟ ଖୋଲିଗଲା ଜାଣ !"

"ବୋଇଲେ ?" କେଳା ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

"ତୋତେ ହଜାରେ ରୌପ୍ୟ ମୁଦ୍ରା ଦେବି । ତୁ ଖାଲି ଗୋଟାଏ କାମ କରିବୁ । ଆଗାମୀ କାଲି ମୋଠୁଁ ନିର୍ଦ୍ଦେଶ ପାଇବା ମାତ୍ରେ ଅମାତ୍ୟମାନଙ୍କ ଆଗରେ କହିବୁ କି ପାଞ୍ଚଦିନ ତଳେ ରାଜକୁମାର ପ୍ରଦ୍ୟୁମ୍ନ ତୋ'ଠୁଁ ଗୋଟିଏ କଳା ନାଗ କିଣିଥିଲେ । ବାସ୍ । ସେତିକି । ସେତିକରେ ହଜାରେ ମୁଦ୍ରା ! ହାଃ ହାଃ !" ମନ୍ତ୍ରୀ କହିଲେ ।

"ଯେ ଆଜ୍ଞା, ହଜୁର !" କହିଲା କେଳା ।

ମନ୍ତ୍ରୀ ସବୁ ଅମାତ୍ୟମାନଙ୍କୁ ତହିଁ ପରଦିନ ଦରବାର କକ୍ଷରେ ଉପସ୍ଥିତ ହେବାକୁ ନିର୍ଦ୍ଦେଶ ପଠାଇଲେ । ସେ ନିଜେ ଓ ରାଜକୁମାର ପ୍ରଦ୍ୟୁମ୍ନ ଦରବାର କକ୍ଷର ଉଚ୍ଚ ସ୍ଥାନରେ ବସିବା ସକାଶେ ଦୁଇଟି ଆସନ ରଖାହେଲା । ପ୍ରଦ୍ୟୁମ୍ନ ବୁଝିଲେ କି ମନ୍ତ୍ରୀ ତାଙ୍କୁ ଯେପରି ଯେପରି ସମ୍ମାନ ଦେବାକଥା, ତାହା ଦେଉଛନ୍ତି । ସେ ପୁଣି ଥରେ ମନ୍ତ୍ରୀଙ୍କୁ କାର୍ଯ୍ୟକ୍ରମ ବିଷୟରେ ପଚାରି ପାରିଥାନ୍ତେ । କିନ୍ତୁ ତାଙ୍କ ମନରେ ପାପ ନଥିଲା କି ସେ ମନ୍ତ୍ରୀଙ୍କ ମତଲବ୍ ବିଷୟରେ କିଛି ସନ୍ଦେହ କରୁ ନଥିଲେ । ତେଣୁ ସେ ବିଷୟରେ ସେ ଆଉ କୌଣସି କୌତୂହଳ ଦେଖାଇଲେ ନାହିଁ ।

କେଳା ସେଦିନ ମନ୍ତ୍ରୀଙ୍କ ସେ ବିଶ୍ୱସ୍ତ ଲୋକର ତତ୍ତ୍ୱାବଧାନରେ ରହିଲା । ପରଦିନ ଅମାତ୍ୟଙ୍କ ସଭା ଆଗରେ ମନ୍ତ୍ରୀ କହିଲେ, "ବନ୍ଧୁଗଣ, ରାଜାଙ୍କ ଜୀବନ ନେବା ପାଇଁ ଯିଏ ଚକ୍ରାନ୍ତ କରିଥିବ, ତା'ର ପ୍ରାଣଦଣ୍ଡ ଦେବା ଆବଶ୍ୟକ ବୋଲି ଆପଣମାନେ ଏକମତ ହୋଇଛନ୍ତି । ବର୍ତ୍ତମାନ ସେ ବ୍ୟକ୍ତି କିଏ, ଜାଣିବେ । ସାବଧାନ । ଆପଣମାନେ ବିସ୍ମିତ ହେବେ । କିନ୍ତୁ ସିଦ୍ଧାନ୍ତରୁ ଓହରିଗଲେ ଚଳିବ ନାହିଁ ।" ଏହା କହି ସେ କେଳାକୁ ଡାକିଲେ ଓ କହିଲେ, "ଯାହା କହିବୁ ସତ୍ୟ କହିବୁ । ବର୍ତ୍ତମାନ କହ ।"

କେଳା ମଣ୍ଡପ ଉପରକୁ ଉଠି ଆସିଲା । ସେ ଭୟରେ ଥରୁଥାଏ ଭଳି ମନେ ହେଲା । ମନ୍ତ୍ରୀ ହସିଲେ ଓ କହିଲେ, "ଭୟ କରିବାର କୌଣସି କାରଣ ନାହିଁ । ତୁ ଯାହା ଯାହା ଜାଣିଛୁ, ସବୁ ନିଷ୍କପଟରେ କହି ଦେ । ସତ କହ ।"

କେଳା ସମସ୍ତଙ୍କୁ ନମସ୍କାର କରି କହିଲା, "ମନ୍ତ୍ରୀ ମୋତେ ସତ୍ୟ କରିବାକୁ ନିର୍ଦ୍ଦେଶ ଦେଇ ବଞ୍ଚାଇ ଦେଲେ । ନହେଲେ ସେ ମୋତେ ଶିଖାଇଥିବା ମିଛ କହିଥାନ୍ତି । ସେ ମୋତେ କହିଥିଲେ କି ମୁଁ ଯେପରି ରାଜକୁମାର ପ୍ରଦ୍ୟୁମ୍ନ ମୋଠୁଁ କଳା ନାଗଟିଏ କିଣିଛନ୍ତି ବୋଲି କହିବି । ଏତିକି ମିଛ ପାଇଁ ସେ ମୋତେ ହଜାରେ ରୌପ୍ୟ ମୁଦ୍ରା ଦେବେ !"

ମନ୍ତ୍ରୀଙ୍କ ମୁହଁ ଫିକା ପଡିଗଲା । ସେ କିଛି କହିବାକୁ ଚେଷ୍ଟା କଲେ । କିନ୍ତୁ ଅମାତ୍ୟମାନଙ୍କ କୋଳାହଳ ଯୋଗୁଁ କିଛି ଶୁଭିଲା ନାହିଁ । ରାଜକୁମାର ପ୍ରଦ୍ୟୁମ୍ନ ଉଠିବେ ମନ୍ତ୍ରୀଙ୍କୁ ବନ୍ଦୀ କରିବାକୁ ଆଦେଶ ଦେଲେ । ମନ୍ତ୍ରୀଙ୍କର ଯେଉଁ ବିଶ୍ୱସ୍ତ ଲୋକ କେଳାକୁ ଡାକି ଆଣିଥିଲା, ସେ ବି ବନ୍ଦୀ ହେଲା ।

ସେ ବିଶ୍ୱସ୍ତ ଲୋକ ସଙ୍ଗେ ସଙ୍ଗେ ସବୁ ମାନିଗଲା ।

ରାଜକୁମାର ପ୍ରଦ୍ୟୁମ୍ନ କେଳାକୁ ତା' ସତ୍ୟବାଦିତା ପାଇଁ ଧନ୍ୟବାଦ ଦେବାରୁ କେଳା କହିଲା, "ଆଜ୍ଞା, ମୋର ଯାହା କାମ ତାହାହିଁ କରିଛି, ତାହାଠୁଁ ଅଧିକ କିଛି ନୁହେଁ । ବିଷଧର ସାପ ଧରିବା ମୋର କାମ । ଏ ମନ୍ତ୍ରୀ ବିଷଧର ସାପଠୁଁ ବଳି । ତେଣୁ ତାକୁ ଧରାଇ ଦେଲି !"

ରାଜା ଜୟକୁମାର ପୁଣି ସୁସ୍ଥ ହେବା ପରେ କେଳାକୁ ଦରବାରରେ ଉଚ୍ଚ ପଦ ଦେଇ ରଖିଲେ । ମନ୍ତ୍ରୀ ଆଜୀବନ କାରାଦଣ୍ଡ ଭୋଗିଲେ । ତାଙ୍କ ବିଶ୍ୱସ୍ତ ଲୋକଟିକୁ ଅବଶ୍ୟ ଛାଡି ଦିଆଗଲା ।





# ପାଣ୍ଡିତ୍ୟର ପରାକାଷ୍ଠା

ହିମାଳୟର ପାଦଦେଶରେ ଥିବା ଏକ ଅଞ୍ଚଳରେ ଜ୍ଞାନସୂର୍ଯ୍ୟ ନାମକ ଜଣେ ଗୁରୁ ଥିଲେ । ତାଙ୍କ ପାଖରେ ଅନେକ ବିଦ୍ୟାର୍ଥୀ ଅଧ୍ୟୟନ କରୁଥିଲେ । ଯେଉଁମାନେ ଅଧ୍ୟୟନ ଶେଷ କରିଥିଲେ, ସେମାନେ ଗୁରୁ ଜ୍ଞାନସୂର୍ଯ୍ୟଙ୍କୁ ଅତ୍ୟନ୍ତ ଶ୍ରଦ୍ଧା କରୁଥିଲେ ।

ଦିନେ ତୀର୍ଥସ୍ୱାମୀ ନାମକ ବିଦ୍ୱାନ ଆସି ଜ୍ଞାନସୂର୍ଯ୍ୟଙ୍କ ଗୁରୁକୁଳରେ ପହଞ୍ଚିଲେ । ସେ ଜ୍ଞାନସୂର୍ଯ୍ୟଙ୍କୁ କହିଲେ, "ପଣ୍ଡିତେ, ଆପଣ ମୋର ନାମ ଶୁଣିଥିବେ ନିଶ୍ଚୟ । ଆର୍ଯ୍ୟାବର୍ତ୍ତରେ ଏଭଳି ପଣ୍ଡିତ ନାହାନ୍ତି, ଯାହାଙ୍କୁ ମୁଁ ଯୁକ୍ତିରେ ପରାସ୍ତ କରିନାହିଁ । ସମସ୍ତେ ସ୍ୱୀକାର କରିଛନ୍ତି ଯେ ମୋ ଜ୍ଞାନ ଆଗରେ ସେମାନଙ୍କ ଜ୍ଞାନ ନ୍ୟୁନ । ଏହି ଦେଖନ୍ତୁ ।" ଏହା କହି ସେ ଖଣ୍ଡିଏ ପୋଥି ଦେଖାଇଲେ । ସେଥିରେ ତାଙ୍କ ସହ କୌଣସି ବିଦ୍ୟା ଉପରେ ତର୍କ କରି ଯୁକ୍ତିରେ ପରାସ୍ତ ହୋଇଥିବା ପଣ୍ଡିତମାନଙ୍କର ନାମ ଲିପିବଦ୍ଧ ଥିଲା ।

"ଆପଣଙ୍କ ଭଳି ବରିଷ୍ଠ ପଣ୍ଡିତଙ୍କ ସାକ୍ଷାତ୍ ପାଇ ମୁଁ ଆନନ୍ଦିତ । କହନ୍ତୁ, ଆପଣଙ୍କର କିପରି ସେବାରେ ମୁଁ ଲଗି ପାରେଁ ?" ଜ୍ଞାନସୂର୍ଯ୍ୟ ପଚାରିଲେ ।

"ଆପଣ ଜଣେ ମହାନ୍ ବିଦ୍ୱାନ୍ ବୋଲି ଶୁଣିଛୁ । ତେଣୁ ଆପଣଙ୍କ ସହ ଯୁକ୍ତିତର୍କ କରି ଆପଣଙ୍କୁ ପରାଜିତ କରିବା ମୋର ଇଚ୍ଛା । ପ୍ରସ୍ତୁତ ହୁଅନ୍ତୁ ।" ତୀର୍ଥସ୍ୱାମୀ କହିଲେ ।

"ମହାଶୟ, ଆପଣ ଏତେ ପଣ୍ଡିତଙ୍କୁ ପରାସ୍ତ କଲେଣି । ମୋ ସହ ଲଢ଼ିବା କ'ଣ ଦରକାର ?"

"ମୁଁ କାହାକୁ ଛାଡ଼ିବି ନାହିଁ ।"

ଜ୍ଞାନସୂର୍ଯ୍ୟ ହସିଲେ ଓ କହିଲେ, "ଆପଣ ପାଟଳିପୁତ୍ରର ପଣ୍ଡିତ ସରଳଙ୍କ ସହିତ ଯୁକ୍ତିତର୍କ କରିଛନ୍ତି ? ମୋ ସହିତ ଯୁକ୍ତିତର୍କ କରିବା

ସମରେନ୍ଦ୍ର



ପୂର୍ବରୁ ତାଙ୍କୁ ହରାଇବା ଆବଶ୍ୟକ ।" ଜ୍ଞାନସୂର୍ଯ୍ୟ କହିଲେ ।

"ପଣ୍ଡିତ ସରଳକ? ତାଙ୍କ ନାମ ତ କାହିଁ ମୁଁ ଶୁଣିନାହିଁ! ମୁଁ ଦୁଇବର୍ଷ ତଳେ ପାଟଳିପୁତ୍ରର ବଡ଼ ବଡ଼ ପଣ୍ଡିତମାନଙ୍କୁ ପରାସ୍ତ କରିଛି ।" ତୀର୍ଥସ୍ୱାମୀ କହିଲେ ।

"ଆପଣ ମୋତେ ପଣ୍ଡିତ ବୋଲି ସ୍ୱୀକାର କରୁଛନ୍ତି ? ମୁଁ ସରଳକଙ୍କୁ ପଣ୍ଡିତ ବୋଲି କହୁଛି । ତେଣୁ ତାଙ୍କ ପାଣ୍ଡିତ୍ୟ ସମ୍ପର୍କରେ ଆପଣ ଆଉ କାହାଠାରୁ ଶୁଣିବା କ'ଣ ଦରକାର ?" ଜ୍ଞାନସୂର୍ଯ୍ୟ କହିଲେ ।

ବିରକ୍ତ ହୋଇ ତୀର୍ଥସ୍ୱାମୀ କହିଲେ, "ଆପଣ ମୋ ସହ ଯୁକ୍ତିତର୍କରୁ ଓହରି ଯିବାକୁ ଚାହୁଁଛନ୍ତି । ତେଣୁ ମୋତେ ଏ ସର୍ତ୍ତ ଦେଉଛନ୍ତି ।"

ଗମ୍ଭୀର ଭାବରେ ଜ୍ଞାନସୂର୍ଯ୍ୟ ଉତ୍ତର ଦେଲେ, "ମହାଶୟ, ମୁଁ ଆପଣଙ୍କ ସହ ଯୁକ୍ତିତର୍କ କରିବାକୁ ଯାଇ ନାହିଁ, ଆପଣ ଆସିଛନ୍ତି । ତେଣୁ ଆପଣ ମୋ ସର୍ତ୍ତ ମାନିବେ ନହେଲେ ଯୁକ୍ତିତର୍କ କରିବା ଲକ୍ଷ୍ୟ ତ୍ୟାଗ କରିବେ । ବିରକ୍ତ ହେବାର ଅଧିକାର ଆପଣଙ୍କୁ କିଏ ଦେଲା ?"

ଅଗତ୍ୟା ତୀର୍ଥସ୍ୱାମୀ ପାଟଳିପୁତ୍ର ଚାଲିଲେ । ସେଠାରେ ସରଳକଙ୍କୁ ଖୋଜି ପାଇବା ସହଜ ହେଲାନାହିଁ । ପାଟଳିପୁତ୍ରର ବିଖ୍ୟାତ ପଣ୍ଡିତମାନେ ସରଳକଙ୍କ ନାମ ଜାଣି ନଥିଲେ । ଅବଶେଷରେ ସେ ସରଳକଙ୍କୁ ଖୋଜି ପାଇଲେ ଅବଶ୍ୟ, ତେବେ ସେ ଦେଖିଲେ ସରଳକ ଜଣେ ସାଧାରଣ ଶିକ୍ଷକ । କିଛି ବିଦ୍ୟାର୍ଥୀ ତାଙ୍କଠାରେ ଅଧ୍ୟୟନ କରନ୍ତି ।

ଏଭଳି ଜଣେ ସାଧାରଣ ଶିକ୍ଷକଙ୍କୁ ଯୁକ୍ତିତର୍କରେ ହରାଇବା ସହଜ କଥା, କିନ୍ତୁ ସେଥିପାଇଁ ତୀର୍ଥସ୍ୱାମୀ କୌଣସି ଉତ୍ସାହ ଅନୁଭବ କରୁ ନଥିଲେ । ଅଥଚ ତାଙ୍କୁ ନ ହରାଇଲେ ଜ୍ଞାନସୂର୍ଯ୍ୟଙ୍କ ସହ ଯୁକ୍ତିତର୍କ କରିବା ସମ୍ଭବପର ହେବ ନାହିଁ ।

ତୀର୍ଥସ୍ୱାମୀ ସରଳକଙ୍କୁ ତାଙ୍କ ଆସିବାର କାରଣ କହିଲେ । ସରଳକ ସବୁ ଶୁଣି କିଛି ସମୟ ନୀରବ ରହି କହିଲେ, "ମହାଶୟ,

ପ୍ରଥମେ ଆପଣ ମୋତେ ପ୍ରଣାମ କରନ୍ତୁ । ତା'ପରେ ଯୁକ୍ତିତର୍କର ପ୍ରଶ୍ନ ଉଠିବ ।"

"ପ୍ରଣାମ କରିବି କାହିଁକି ?" ଆଶ୍ଚର୍ଯ୍ୟ ହୋଇ ପଚାରିଲେ ତୀର୍ଥସ୍ୱାମୀ ।

"କାରଣ ମୁଁ ଗୁରୁ । ପ୍ରମାଣ ହେଲା, ଏଠି ମୋର ଶିଷ୍ୟମାନେ ଅଛନ୍ତି । ସେମାନେ ସମସ୍ତେ କହିବେ ମୁଁ ଗୁରୁ । ଗୁରୁଙ୍କୁ ସମ୍ମାନ ଦେବାକୁ ହୁଏ । ଏହା ଶାସ୍ତ୍ରର ନିୟମ । ଅତଏବ ମୋର ଯୁକ୍ତି ହେଲା, ଆପଣ ପ୍ରଣାମ କରିବେ ।" ଗମ୍ଭୀର ହୋଇ ସରଳକ କହିଲେ ।

"ମୁଁ ଯଦି ପ୍ରଣାମ ନ କରିବି ? ମୁଁ ବି ତ ଗୁରୁ !" ତୀର୍ଥସ୍ୱାମୀ ପଚାରିଲେ ।

"ଆପଣ ଗୁରୁ ବୋଲି ପ୍ରମାଣ ନାହିଁ । ମୁଁ ଗୁରୁ ବୋଲି ପ୍ରମାଣମାନ ଏଠାରେ ଉପସ୍ଥିତ । ଆପଣ ଯଦି ପ୍ରଣାମ ନ କରିବେ, ତେବେ ମାଡ଼ ଖାଇବେ ।" କହିଲେ ସରଳକ ।

"ମାଡ଼ ? କାହିଁକି ?" ଆଶ୍ଚର୍ଯ୍ୟ ଓ ଭୀତ ହୋଇ ତୀର୍ଥସ୍ୱାମୀ ପଚାରିଲେ ।

ହସି ଦେଲେ ସରଳକ । ସେ କହିଲେ, "ମହାଶୟ, ଯୁକ୍ତିତର୍କରେ ଜଣକୁ ହରାଇବା ଏବଂ ମାଡ଼ରେ ହରାଇବା ଭିତରେ ବିଶେଷ ପାର୍ଥକ୍ୟ ନାହିଁ । ମୁଁ ଆପଣଙ୍କୁ ମାଡ଼ ଦେଇ ହରାଇଲେ ଯେପରି ମୁଁ ଆପଣଙ୍କଠାରୁ ବଡ଼ ପଣ୍ଡିତ ବୋଲି ପ୍ରମାଣ ହେବ ନାହିଁ, ଆପଣ ସେହିପରି ମୋତେ ଯୁକ୍ତିତର୍କରେ ହରାଇଲେ ଆପଣ ମୋଠୁଁ ବଡ଼ ପଣ୍ଡିତ ବୋଲି ପ୍ରମାଣ ହେବ ନାହିଁ । ମୁଁ ତ ବର୍ତ୍ତମାନ ଯୁକ୍ତି ଦ୍ୱାରା ପ୍ରମାଣ କରୁଥିଲି ମୁଁ ଗୁରୁ, ଆପଣ ନୁହନ୍ତି । କିନ୍ତୁ ତାହା କ'ଣ ସତ୍ୟ ? ଆମେ ଜ୍ଞାନ ଚର୍ଚ୍ଚା କରୁଁ ସତ୍ୟ କ'ଣ ଜାଣିବା ପାଇଁ । ଅନ୍ୟକୁ ଯୁକ୍ତିରେ ହରାଇବା ପାଇଁ ନୁହେଁ । ଗୁରୁ ଜ୍ଞାନସୂର୍ଯ୍ୟ ଆମକୁ ଏହି ଶିକ୍ଷା ଦେଇଛନ୍ତି ।"

ତୀର୍ଥସ୍ୱାମୀ ଗୁରୁ ଜ୍ଞାନସୂର୍ଯ୍ୟଙ୍କ ପାଖକୁ ଫେରିଗଲେ ଓ କହିଲେ, "ଆପଣ ସରଳକ ପାଖକୁ ପଠାଇ ମୋ ଚକ୍ଷୁ ଭଲଭାବେ ଖୋଲି ଦେଲେ !"






[ ୧୪ ]

[ରାଜକୁମାର ଅମିତସେନ୍‌ଙ୍କ ନାମ ରାକ୍ଷସ ଉଗ୍ରାକ୍ଷ ଦେଇଥାଏ ଉଗ୍ରଦତ୍ତ। ଯେତେବେଳେ ଉଗ୍ରଦତ୍ତ ଓ ତାଙ୍କର ଦୁଇ ବାଲ୍ୟସାଥି ରୁଦ୍ର ଓ ଅରୁଦ୍ରଙ୍କୁ ବୟସ କୋଡ଼ଏ ଲେଖାଏଁ, ସେତେବେଳେ ଥରେ ସେ ତିନିଜଣ ଅଗ୍ନିପକ୍ଷୀ ଓ ବ୍ୟାଘ୍ରଚର୍ମଧାରୀଙ୍କ ସନ୍ଧାନରେ ବାହାରିଲେ। ରାତିଟି ବଣରେ କଟାଇ ସେମାନେ ସକାଳେ ହଠାତ୍ ନାରୀ କଣ୍ଠର ଆର୍ତ୍ତନାଦ ଶୁଣି ସେମାନେ ସେଆଡ଼େ ଯିବାବେଳକୁ ବ୍ୟାଘ୍ରଚର୍ମଧାରୀମାନେ ସେମାନଙ୍କୁ କାବୁ କରିନେଲେ। ତା'ପରେ...]

ଏ ଘଟଣା ଏପରି ଅପ୍ରତ୍ୟାଶିତ ଭାବରେ ଘଟିଗଲା ଯେ ଉଗ୍ରଦତ୍ତ ଓ ତାଙ୍କ ସାଥିମାନେ କିଂକର୍ତ୍ତବ୍ୟବିମୂଢ଼ ହୋଇ ପଡ଼ିଲେ। ନିଜେ ଯଥେଷ୍ଟ ସତର୍କ ଭାବରେ କାମ ନ କରିବାରୁ ସିନା ଏପରି ହେଲା! ଉଗ୍ରଦତ୍ତ ଏହି କଥା ଭାବି ନିଜେ ସନ୍ତପ୍ତ ହେଲେ। ଏ ପରିସ୍ଥିତିରୁ କପରି ମୁକୁଳିବା ସମ୍ଭବ ହେବ ସେ ସେକଥା ବୁଝିପାରିଲେ ନାହିଁ।

ଯେଉଁ ଯୁବତୀକୁ ଏ କ୍ରୂର ବ୍ୟକ୍ତିମାନେ ବନ୍ଦୀ କରିବାକୁ ଚେଷ୍ଟା କରୁଥିଲେ, ତାଙ୍କର କ'ଣ ହେଲା? ସେ ବନ୍ଦୀ ହୋଇଛନ୍ତି ନା କୌଣସିମତେ ଖସି ଯାଇ ସେ କନ୍ଦାରେ




ଆଶ୍ରୟ ନେଇଛନ୍ତି ? ଉଗ୍ରଦତ୍ତ ଏ ପ୍ରଶ୍ନର ବି କୌଣସି ଉତ୍ତର ପାଇଲେ ନାହିଁ ।

ସେ ଭାବୁଥିଲେ, ଯଦି ସେ ଯୁବତୀର ଆର୍ତ୍ତନାଦ ସେ ଜଙ୍ଗଲର ବାସିନ୍ଦାମାନେ ଶୁଣିଥିବେ, ତେବେ ହୁଏତ ତାହା ଦ୍ୱାରା ଆକୃଷ୍ଟ ହୋଇ ସେମାନେ ବାହାରି ଆସିବେ । ସେମାନେ ଆସିଲେ ସେ ଓ ତାଙ୍କ ସାଥିମାନେ ମଧ୍ୟ ରକ୍ଷା ପାଇଯିବେ । ସେ ବାରମ୍ବାର ସେ ଜଙ୍ଗଲ ଆଡ଼େ ଦୃଷ୍ଟିପାତ କରିବାକୁ ଲାଗିଲେ ।

କିନ୍ତୁ ଏଇ କ'ଣ ? ବ୍ୟାଘ୍ରଚର୍ମଧାରୀମାନେ ତାଙ୍କ ସାଥି ରୁଦ୍ରକୁ ନେଇ ଏଇ କ'ଣ କରୁଛନ୍ତି ? ବାସ୍ତବରେ ଶତ୍ରୁମାନେ ରୁଦ୍ରକୁ ଫାନ୍ଦରେ ପକାଇ ନେଇଯାଇ ଗୋଟିଏ ଅଗ୍ନିପକ୍ଷୀ ଉପରେ ବସାଇବାକୁ ଚେଷ୍ଟା କରୁଥିଲେ ।

"ରୁଦ୍ର ! ତମେ କେଉଁଠି ?" ଉଗ୍ରଦତ୍ତ ପାଟି କରି ପଚାରିଲେ ।

"ଉଗ୍ରଦତ୍ତ ! ଏ ଦୁଷ୍ଟମାନେ ମୋତେ ନେଇ ଗୋଟାଏ ଭୟଙ୍କର ପକ୍ଷୀ ଉପରେ ଚଢ଼ାଇବାର ଉଦ୍ୟମ କରୁଛନ୍ତି । ଅରୁଦ୍ରର ଅବସ୍ଥା ବି ଏକା । ତୁମେ କେଉଁଠି ?" ତମ ଅବସ୍ଥା କ'ଣ ?" ରୁଦ୍ର ଉତ୍ତର ଦେଲା ।

"ମୁହଁ ବନ୍ଦ କର !" ଜଣେ ବ୍ୟାଘ୍ରଚର୍ମଧାରୀ ଧମକଦେଇ କହିଲା । "ତମେ ତିନୋଟା ନିଜ ନିଜକୁ ଭାରି ବୀର ବୋଲି ଭାବିଥିଲ, ନୁହେଁ ? ବର୍ତ୍ତମାନ ! ବାପ୍‌ରେ କି ତେଜରେ ସାମନ୍ତ ରାଜା ସୁଦର୍ଶନଙ୍କ କନ୍ୟା ଚନ୍ଦ୍ରଲେଖାକୁ ଉଦ୍ଧାର କରିବାକୁ ଆଗେଇ ଆସୁଥିଲ !"

ଉଗ୍ରଦତ୍ତ ବୁଝିଲେ ସେ ଯୁବତୀ କିଏ ! ସେ ଯେତେବେଳେ ସାମନ୍ତ ରାଜାଙ୍କ କନ୍ୟା, ସେତେବେଳେ ତାଙ୍କୁ ଖୋଜିବାକୁ ଅବଶ୍ୟ ସୈନ୍ୟସାମନ୍ତ ବା ଅନ୍ତତଃ ତାଙ୍କ ସଖୀ ବା ପରିଚାରିକାମାନେ ସେଆଡ଼େ ଆସିବା କଥା ! କିନ୍ତୁ କାହିଁ ?

ସେତିକିବେଳେ ଜଙ୍ଗଲ ଆଡ଼ୁ କିଛି କୋଳାହଳ ଶୁଭିଲା । ଘୋଡ଼ାଙ୍କ ଠାପୁ ଧ୍ୱନି ଓ ହ୍ରେଷାରବ ବି ଶୁଭିଲା । ଉଗ୍ରଦତ୍ତଙ୍କ ମନରେ ଆଶାର ସଞ୍ଚାର ହେଲା । ନିଶ୍ଚୟ ରାଜକୁମାରୀଙ୍କ

ଆର୍ତ୍ତନାଦ କାନ୍ଥାରେ ପଡ଼ୁଅଛି ଓ ତାଙ୍କୁ ଉଦ୍ଧାର କରିବା ନିମନ୍ତେ ଋଷୀମାନେ ଆସୁଥିବେ ଆସୁଛନ୍ତି ! ଆଃ, ଏତିକିବେଳେ ସେ ଯଦି କୌଣସି ମତେ ମୁକୁଳିଯାଇ ପାରନ୍ତେ !

ସେ ବନ୍ଧନ ଛଡ଼ାଇବାକୁ ଚେଷ୍ଟା କଲେ । ତାହା ଲକ୍ଷ୍ୟ କରି ଜଣେ ବ୍ୟାଘ୍ରଚର୍ମଧାରୀ ପାଟି କରି କହିଲା, "ସାବଧାନ ! ପଳାଇବାର ଚେଷ୍ଟା କଲେ ଏ ଭଲ୍ଲ ତମ ଛାତି ଲକ୍ଷ୍ୟ କରି ନିକ୍ଷେପ କରିବ ।"

ଏହାପରେ ସେମାନେ ଉଗ୍ରଦତ୍ତଙ୍କୁ ବି ଉଠାଇ ନେଇ ଗୋଟିଏ ଭୟଙ୍କର ପକ୍ଷୀ ଉପରେ ବସାଇ ଦେଲେ । ଗୃହୁଁ ଗୃହୁଁ ସେ ପକ୍ଷୀ ଉପରକୁ ଉଡ଼ିଲା । ତା'ର ଗତିରେ ଉଗ୍ରଦତ୍ତ ତଳକୁ ଖସି ପଡ଼ିବେ, ଏମିତି ଲାଗିଲା । ସେ ସମ୍ଭାଳି ହୋଇ ବସିଲେ । କ୍ରମେ ପକ୍ଷୀ ମେଘ ଉପରକୁ ଉଠିଗଲା । ଶୀତଳ ପବନ ସାଇଁ ସାଇଁ ଦେହରେ ଲାଗିଲା । ସେ ଏଣେତେଣେ ଅନାଇବାକୁ ଚେଷ୍ଟା କଲେ । କ୍ରମେ ମେଘମାଳା ତଳେ ବନଲତା ଅଦୃଶ୍ୟ ହୋଇଗଲେ । ସେ ଆଖି ବୁଜିଦେଲେ ।

ଭାଗ୍ୟରେ ତାଙ୍କର ନାନା ବିଚିତ୍ର ଅଭିଜ୍ଞତା ଲେଖାଥିଲା । ଶିଶୁ ଅବସ୍ଥାରେ ନିଜ ପିତୃ-ନଗର ଛାଡ଼ି ସକ୍ଷମପୁରୀରେ ରହିଥିଲେ । ଆଜି ପୁଣି କେଉଁ ଅଜ୍ଞାତପୁରୀକୁ ଯିବାକୁ ପଡ଼ୁଛି କିଏ ଜାଣେ ! ଆଗରୁ ଏଭଳି ଘଟଣା




ବାସ୍ତବିକ ତାଙ୍କ କଳ୍ପନା ବାହାରେ ଥିଲା । ତାଙ୍କ ମନରୁ ଭୟ ଦୂର ହୋଇ ଯାଇଥିଲା । କିନ୍ତୁ ବିପଦର ଆଶଙ୍କା ସର୍ବଦା ଥିଲା । ତାଙ୍କ ପାଖରେ ବସି ଜଣେ ବ୍ୟାଘ୍ରଚର୍ମଧାରୀ ତାଙ୍କୁ ଧରି ରଖିଥିଲା—ସେ ଯେପରି ଖସି ନ ପଡ଼ିବେ !

କେତେ ସମୟ ବିତିଯିବା ପରେ ଉଗ୍ରଦତ୍ତଙ୍କର ମନେ ହେଲା ପକ୍ଷୀଟି ତଳକୁ ଖସୁଛି । ସେତିକିବେଳେ ସେ କାହାରି କଣ୍ଠସ୍ୱର ଶୁଣିଲେ । ସେ କହୁଥିଲା : "ଆମ ବନ୍ଧୁ ଭଲ୍ଲୁକଚର୍ମଧାରୀମାନଙ୍କୁ ସାବଧାନ ! ବିଶେଷ କରି ଯେଉଁ ସବୁ ପକ୍ଷୀଙ୍କ ଉପରେ ଚନ୍ଦ୍ରଲେଖା ଓ ଅନ୍ୟ ବନ୍ଦୀମାନେ ଅଛନ୍ତି, ସେ ପକ୍ଷୀମାନେ ଅତି ସାବଧାନରେ ଅବତରଣ କରିବା ଉଚିତ ।




ଅନ୍ୟମାନେ ଭଲ୍ଲୁକଚର୍ମଧାରୀଙ୍କୁ ସାମ୍ନା କରିବାକୁ ପ୍ରସ୍ତୁତ ହୁଅ!"

ଉଗ୍ରଦତ୍ତ ବୁଝିଲେ କି ବହ୍ନି ଦ୍ୱୀପରେ ଦୁଇ ପରସ୍ପର ବିରୋଧୀ ସମ୍ପ୍ରଦାୟ ଅଛନ୍ତି। ଦଳେ ବ୍ୟାଘ୍ରଚର୍ମଧାରୀ ଓ ଅନ୍ୟ ଦଳେ ଭଲ୍ଲୁକଚର୍ମଧାରୀ। ଏ ରହସ୍ୟ ଜାଣି ତାଙ୍କ ମନରେ କିଛି ଆଶାର ସଞ୍ଚାର ହେଲା। ଦୁଇ ପକ୍ଷର ବିରୋଧ ଅବସରରେ ସେ ଓ ତାଙ୍କ ସାଥିମାନେ ହୁଏତ ଖସି ଯାଇ ପାରିବେ। ଉଭୟ ପକ୍ଷ ଭିତରେ କେଉଁ ପକ୍ଷ ଅଧିକ ଶୂର, ତାହା ମଧ୍ୟ ବିଚାର ବିଷୟ। ପୁଣି ତାଙ୍କ ମନରେ ଆଶଙ୍କା ହେଲା—ଦୁଇ ପକ୍ଷ ଭିତରେ ଯୁଦ୍ଧ ଆକାଶ ପଥରେ ଲାଗିଯିବ ନାହିଁ ତ? ଯଦି ତାହା ହୁଏ, ତେବେ ସେମାନେ ହୁଏତ ତଳକୁ ଖସି ପଡ଼ିବେ ଓ ପ୍ରାଣ ହରାଇବେ।

କିଛି ସମୟ ଭିତରେ ଉଗ୍ରଦତ୍ତଙ୍କୁ ବହନ କରିଥିବା ପକ୍ଷୀ ତଳକୁ ଓହ୍ଲାଇବାକୁ ଲାଗିଲା। ଉଗ୍ରଦତ୍ତ ଦେଖିଲେ, ତଳେ ଭଲ୍ଲୁକଚର୍ମଧାରୀ କେତେକ ବ୍ୟକ୍ତି ହାତରେ ଭଲ୍ଲମାନ ଧରି ଅବତରଣକାରୀମାନଙ୍କୁ ଆକ୍ରମଣ କରିବାକୁ ପ୍ରସ୍ତୁତ ହୋଇ ରହିଛନ୍ତି। ସେ ଯାହା ଆଶଙ୍କା କରିଥିଲେ, ତାହାହିଁ ହେଲା। ପକ୍ଷୀମାନେ ଭୂମି ସ୍ପର୍ଶ କରିବା ପୂର୍ବରୁହିଁ ଦୁଇଦଳ ଭିତରେ ଲଢ଼େଇ ଲାଗିଗଲା। ତଳୁ ଉପରକୁ ଛଡ଼ା ହେଉଥିବା ଭଲ୍ଲ ମାଡ଼ରେ କେହି କେହି ବ୍ୟାଘ୍ର-ଚର୍ମଧାରୀ ଆହତ ହୋଇ ଚିତ୍କାର କରି ତଳେ ପଡ଼ିଯିବାର ଦେଖାଗଲା। ସବାର ପଡ଼ିଯିବା ଫଳରେ ପକ୍ଷୀମାନେ ଆର୍ତ୍ତନାଦ କରି ପ୍ରବଳ ବେଗରେ ପକ୍ଷ ଚଳାଇ ଦୂରକୁ ପଳାଇଗଲେ।

ଉଗ୍ରଦତ୍ତ ଯେଉଁ ପକ୍ଷୀ ଉପରେ ସବାର ହୋଇଥିଲେ, ତାହା ଗୋଟିଏ ପାହାଡ଼ିଆ ମାଟି ଉପରେ ଓହ୍ଲାଇଲା। ସେ ପକ୍ଷୀ ଉପରେ ବସିଥିବା ବ୍ୟାଘ୍ରଚର୍ମଧାରୀ ଲୋକଟି ଅନ୍ୟ ଜଣକ ସାହାଯ୍ୟରେ ଉଗ୍ରଦତ୍ତଙ୍କୁ ପକ୍ଷୀ ଉପରୁ ଉଠାଇ ତଳେ ପକାଇଦେଲା—ସତେ ଅବା ସେ ଗୋଟାଏ ହେୟ ବସ୍ତୁ! ଭାଗ୍ୟକୁ ତଳେ ବହଳ ଘାସ ଥିବା ଯୋଗୁଁ ଉଗ୍ରଦତ୍ତ ଆଘାତ ପାଇଲେ ନାହିଁ। ସେ ଇଚ୍ଛାକରି ମୃତବତ୍ ପଡ଼ି ରହିଲେ।



"ଆରେ, ଲୋକଟି ମରି ଯାଇଛି ଭଳି ଲାଗୁଛି!" ଜଣେ ବ୍ୟାଘ୍ରଚର୍ମଧାରୀ ଥରେ ଉଗ୍ରଦତ୍ତଙ୍କୁ ତା' ଗୋଡ଼ରେ ହଲାଇଦେଇ କହିଲା। ଆଉଜଣକ ହସିଦେଇ କହିଲା, "ଇଏ ମରିଥିଲେ କେତେ ବଞ୍ଚିଥିଲେ କେତେ! ଆମେ ରାଜକୁମାରୀଙ୍କୁ ଆଣି ସର୍ଦ୍ଦାର ପାଖରେ ପହଞ୍ଚାଇଦେଇ ପାରିଛୁଁ, ତାହାହିଁ ଆମର ସାଫଲ୍ୟ। ଏ ଲୋକ ଡନୋଟି ମୂର୍ଖଙ୍କ ଭଳି ରାଜକୁମାରୀଙ୍କୁ ରକ୍ଷା କରିବାକୁ ଦୌଡ଼ ଆସି ନଥିଲେ ଆମେ ବା କାହିଁକି ଏମାନଙ୍କୁ ଧରି ଆଣିଥାନ୍ତୁ! ଛାଡ଼। ଏ ବିଷୟରେ ଆମେମାନେ ପରେ ଆଲୋଚନା କରିବା। ପ୍ରଥମେ କନ୍ଧର ଅନୁଚରମାନଙ୍କ ସହ ମୁକାବିଲା କରିବାକୁ ପଡ଼ିବ। ଚାଲ, ଚାଲ!" ଏହା ପରେ ଦୁଇଜଣଯାକ ସେ ଅଗ୍ନି ପକ୍ଷୀ ଆଡ଼େ ଅଗ୍ରସର ହେଲେ।

ଉଗ୍ରଦତ୍ତ ହଲ୍‌ଚଲ୍ ନହୋଇ ଧ୍ୟାନ ଦେଇ ସେ ଦୁହିଁଙ୍କ କଥାବାର୍ତ୍ତା ଶୁଣୁଥିଲେ। ସେ ସେମାନଙ୍କ କଥାରୁ ଦୁଇଟି ବିଷୟରେ ଧାରଣା କରିନେଲେ। ପ୍ରଥମ କଥା ହେଲା, ବ୍ୟାଘ୍ରଚର୍ମଧାରୀଙ୍କର ଯେଉଁମାନେ ଶତ୍ରୁ, ସେମାନଙ୍କ ନେତାର ନାମ କନ୍ଧ। ଦ୍ୱିତୀୟରେ ସାମନ୍ତ ରଜା ସୁଦର୍ଶନଙ୍କ କନ୍ୟାଙ୍କୁ ବ୍ୟାଘ୍ରଚର୍ମଧାରୀଙ୍କ ସର୍ଦ୍ଦାର ପାଖରେ ପହଞ୍ଚାଇ ଦିଆ ଯାଇଛି।

ସେ ଦୁଇଜଣ ଲୋକଙ୍କ ପାଦଶବ୍ଦ ନୀରବ ହୋଇଯିବା ପରେ ଉଗ୍ରଦତ୍ତ ନିଜ ବନ୍ଧନ ଖୋଲିବାକୁ ଚେଷ୍ଟା କଲେ। କିନ୍ତୁ ସେଥିରେ ତାଙ୍କ ବନ୍ଧନ ଆହୁରି ଦୃଢ଼ ହେଲା ଭଳି ଲାଗିଲା। ସେ ଅସାଡ଼ ହୋଇ ପଡ଼ି ରହି ଭାବିଲେ, "ବର୍ତ୍ତମାନ ଭାଗ୍ୟ ଉପରେ ନିଜକୁ ଛାଡ଼ିଦେବା ଛଡ଼ା ଆଉ କିଛି କରିବାର ନାହିଁ। ଯଦି କେହି ଆସି ମୋତେ ବନ୍ଧନ ମୁକ୍ତ କରିବ, ତେବେ ଯାଇ ମୋର ବଞ୍ଚିବାର ଆଶା ଅଛି। ନହେଲେ ମୃତ୍ୟୁ ଅବଧାରିତ। ଛୁଦ୍ର ଓ ଅଛୁଦ୍ରଙ୍କର ବି ଏହିପରି ଅବସ୍ଥା ହୋଇଥିବ।"

ଆକାଶରେ କିଛି ଶବ୍ଦ ଶୁଣି ସେ ଉପରକୁ ଅନାଇ ଦେଖିଲେ, ଦୁଇଦଳ ପକ୍ଷୀଙ୍କ ଭିତରେ ଲଢ଼େଇ ଲାଗିଛି। ଦଳେ ପକ୍ଷୀ ପଶ୍ଚିମ



ଆଡ଼କୁ ପଳାଇ ଯାଉଛନ୍ତି । ଆଉ ଦଳେ ସେମାନଙ୍କୁ ଅନୁସରଣ କରୁଛନ୍ତି ।

କ୍ରମେ ସୂର୍ଯ୍ୟ ତାପ କଡ଼ା ହେବାକୁ ଲାଗିଲା । ତାଙ୍କୁ ସେତେବେଳକୁ ଭୋକ ସହ ଭୀଷଣ ଶୋଷ ବି ଲାଗୁଥାଏ । "ଏଇ ନିର୍ଜନ ସ୍ଥାନରେ ହୁଏତ ମୁନ୍ଦାଏ ପାଣି ବିନା ପ୍ରାଣ ଯିବ !" ସେ ମନେ ମନେ ଭାବିଲେ । ଶତ୍ରୁ ପକ୍ଷର କୌଣସି ଲୋକ ଆସି ପହଞ୍ଚିଲେ ବି କିଛି ସମୟ ପାଇଁ ଜୀବନ ରହିଯାନ୍ତା । ପରିସ୍ଥିତି କ'ଣ, ବ୍ୟାଘ୍ରଚର୍ମଧାରୀ ଓ ଭଲ୍ଲୁକଚର୍ମଧାରୀଙ୍କ ଭିତରେ ଲଢ଼େଇରେ କେଉଁ ପକ୍ଷର ଜୟ ହେଲା ?

ଉଗ୍ରଦତ୍ତ ଏହିପରି ନାନା କଥା ଭାବୁଛନ୍ତି, ହଠାତ୍ ପାଖରେ ଥିବା ଗୋଟିଏ ଗଛ ମୂଳରୁ କୌଣସି ଶବ୍ଦ ଶୁଣିଲେ । ସେ ଶବ୍ଦ ଅନୁସରଣ କରି ଯେତେବେଳେ ତାଙ୍କ ଦୃଷ୍ଟି ଯାଇ ସେ ଗଛ ମୂଳରେ ପଡ଼ିଲା, ସେତେବେଳେ ସେ ଭୟରେ ଥରି ଉଠିଲେ । ଗଛ ମୂଳରେ ଠିଆ ହୋଇ ଯୋଡ଼ିଏ ହେଟା ତାଙ୍କ ଆଡ଼େ ଅନାଉଥିଲେ ଓ ଜିଭ ବାହାର କରୁଥିଲେ । ବୋଧହୁଏ ସେ ମୃତ କି ଜୀବିତ ହେଟା ଦୁଇଟା ସେଇଆ ନିରୂପଣ କରିବାକୁ ଚେଷ୍ଟା କରୁଥିଲେ । ଏସେ ଅସହାୟ ବୋଲି ଯଦି ସେମାନେ ବୁଝି ପାରିବେ, ତେବେ କଥା ସରିଲା ! ବାସ୍ତବିକ ବିପଦ ଏକୁଟିଆ ଆସେ ନାହିଁ ବୋଲି ଯେଉଁ କଥା ଅଛି, ତାହା ସତ ।

ଉଗ୍ରଦତ୍ତ ନିଜର ସବୁ ବଳ ଖଟାଇ ଉଠି ବସିବାକୁ ଚେଷ୍ଟା କଲେ ଓ ଯେତେ ଉଚ୍ଚ କଣ୍ଠରେ ସମ୍ଭବ ଚିତ୍କାର କଲେ । ସେ ଚିତ୍କାର ଶୁଣି ହେଟା ଦୁଇଟି ଚମକି ଉଠି ପଳାୟନ କଲେ ।

ଉଗ୍ରଦତ୍ତ ଆଶ୍ୱସ୍ତ ହେଲେ । କିନ୍ତୁ ସେଭଳି ପରିସ୍ଥିତିରେ ସେ କେତେ ସମୟ ବା ନିରାପଦ ରହି ପାରିବେ ? ତାହାହିଁ ହେଲା ତାଙ୍କ ମନରେ ପ୍ରଶ୍ନ ।

ଅଧିକ ସମୟ ସେ ଚିନ୍ତା କରି ପାରିଲେ ନାହିଁ । କାରଣ ସେ ଭୀଷଣ ଅବସନ୍ନ ଅନୁଭବ କରିବା ସଙ୍ଗେ ସଙ୍ଗେ ନିଦକୁ ରୋକି ପାରୁ ନଥିଲେ ।

ସେ ନିଦରେ ଶୋଇଥିଲେ କି ଜ୍ଞାନ ହରାଇ ଥିଲେ, ସେକଥା କହିବା ସମ୍ଭବପର ନୁହେଁ । ଯେତେବେଳେ ତାଙ୍କ ଚେତା ହେଲା, ସେତେବେଳେ ସେ ତାଙ୍କ ମୁହଁ ପାଖରେ କାହାର ନିଃଶ୍ୱାସ ଶବ୍ଦ ଶୁଣିଲେ । ଧିରେ ଧିରେ ଆଖି ଖୋଲି ସେ ଦେଖିଲେ, ଭାଲୁଟିଏ ତାଙ୍କୁ ଆଘ୍ରାଣ କରୁଛି । ସେ ପୁଣି ଥରେ ଚିତ୍କାର ଛାଡ଼ିଲେ ଓ ଭାଲୁ ପଳାଇଗଲା ।

ତାଙ୍କର ସେ ଚିତ୍କାରରେ ଆକୃଷ୍ଟ ହୋଇ ଦୁଇଜଣ ଲୋକ ଆସି ସେଠାରେ ପହଞ୍ଚିଗଲେ । ଜଣେ ଅନ୍ୟ ଜଣଙ୍କୁ ନିମ୍ନ କଣ୍ଠରେ କହୁଥାଏ, "ବେଶ ପୋଷାକରୁ ମନେ ହୁଏ ଏ ଉଇବଂଶର ଲୋକ । ଆମ ଶତ୍ରୁମାନେ ଏହାକୁ ବନ୍ଦୀ କରି ଏଠାକୁ ଆଣିଥିବେ ପରା !"

"ଭାଇମାନେ, ପ୍ରଥମେ ମୋତେ ବନ୍ଧନ ମୁକ୍ତ କର ଓ ପିଇବାକୁ ପାଣି ଦିଅ ।" ଉଗ୍ରଦତ୍ତ କହିଲେ । ସେମାନେ ସଙ୍ଗେ ସଙ୍ଗେ ତାଙ୍କ ବନ୍ଧନ କାଟି ଦେଲେ । ଜଣକ ପିଠିରେ ଗୋଟିଏ ତୁମ୍ବାରେ ପାଣିଥାଏ । ସେ ଉଗ୍ରଦତ୍ତଙ୍କୁ ସେ ପାଣି ପିଇବାକୁ ଦେଲା ।

ଉଗ୍ରଦତ୍ତ ସତେ ଅବା ପ୍ରାଣ ଫେରି ପାଇଲେ ଓ କହିଲେ, "ତୁମେମାନେ ଶତ୍ରୁ ନା ମିତ୍ର ?"

"ଆମେ ବି ସେଇଆ ପଚାରିବାକୁ ଯାଉଥିଲୁଁ । ତମେ ଆମ ଶତ୍ରୁପକ୍ଷର ନା ଆମର ମିତ୍ର ? ତେବେ ସେକଥା ଆମ ସର୍ଦ୍ଦାର ନିରୂପଣ କରିବେ ।" ସେ ଦୁଇଜଣଙ୍କରୁ ଜଣେ କହିଲା !

"ଭଲ କଥା ଭାଇ ! ତମେମାନେ ମୋତେ ତମ ସର୍ଦ୍ଦାରଙ୍କ ପାଖକୁ ନେଇଚାଲ ।" ଉଗ୍ରଦତ୍ତ କହିଲେ ।

ସେ ଦୁହେଁ ତାଙ୍କୁ ପାହାଡ଼ ଚଢ଼ାଇ କିଛି ଦୂର ନେଇଯିବା ପରେ ଗୋଟିଏ ସ୍ଥାନରୁ ଖଣ୍ଡିଏ ପଥର ଉଠାଇଲେ । ଭିତରେ ଗୋଟିଏ ସୁଡ଼ଙ୍ଗ ଥିବାର ଦେଖାଗଲା । ତିନିହେଁ ସେ ସୁଡ଼ଙ୍ଗରେ ପଶିସାରିବା ପରେ ପଥର ଦ୍ୱାରା ସେ ଦୁହେଁ ସେ ସୁଡ଼ଙ୍ଗର ଦ୍ୱାର ବନ୍ଦ କରିଦେଲେ ।

(କ୍ରମଶଃ)






# ସାହସୀ ଓ ଭୀରୁ

ନିଶା ଗରଜୁଥାଏ । ଥୁହାକୁ ଥୁହା ଶୀତଳ ପବନ ସାଙ୍ଗକୁ ଅସରାଏ ଲେଖାଏଁ ବର୍ଷା ବର୍ଷି ଯାଉଥାଏ । ଘଡ଼ଘଡ଼ ଶବ୍ଦ ଓ ଶ୍ୱାନଶ୍ୱାପଦଙ୍କ ରଡ ମଝିରେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନ ଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୂର୍ତ୍ତିମାନ ।

ତଥାପି ରାଜା ବିକ୍ରମାର୍କ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ସେ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତେବେ ତା'ପରେ ତାକୁ କାନ୍ଧରେ ପକାଇ ସେହି ଶୂନ୍‌ଶାନ୍‌ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା, ତମେ ଏଭଳି ଦୁର୍ଯୋଗପୂର୍ଣ୍ଣ ରାତିରେ ଯେ ଏଭଳି ଦୁଃସାହସିକ କାମ

## ବେତାଳ କଥା



ହାତକୁ ନେଇଛ, ଏହା ପଛରେ ନିଶ୍ଚୟ କୌଣସି ବିଶେଷ କାରଣ ରହିଛି । ତମେ ତମ ପାରିବାପଣ ପ୍ରମାଣ କରିବା ପାଇଁ ଏ କାମ କରୁଛ ନା କାହା ଦ୍ୱାରା ଉତ୍ପ୍ରେରିତ ହୋଇ କରୁଛ, ତାହା ଏକ ବଡ଼ ପ୍ରଶ୍ନ । ପୂରୁଣା ଦିନର ଗୋଟିଏ ଘଟଣା ଆମକୁ ଏହି ଧରଣର ଏକ ପ୍ରଶ୍ନ ମନେ ପକାଇଦିଏ । ଘଟଣାଟି କହୁଛି । ମନଦେଇ ଶୁଣ । ଶୁଣିଲେ ଶ୍ରମଭାର ଲାଘବ ମନେ ହେବ ।"

ବେତାଳ ଗପିଲ: ଜୟପୁର ରାଜ୍ୟର କଥା । ସେ ରାଜ୍ୟର ଗୋଟିଏ ସମୃଦ୍ଧ ଗ୍ରାମରେ ଦୁଇଜଣ ଯୁବକ ଥିଲେ । ସେମାନଙ୍କ ନାମ ସୁମନ୍ତ ଓ ନରେନ୍ଦ୍ର । ସେ ଦୁହେଁ ଥିଲେ ଖୁବ୍ ଘନିଷ୍ଠ ବନ୍ଧୁ । ଖେଳ କସରତ୍ ଅଭ୍ୟାସ କରିବାଠୁଁ ମେଳ ମଉଚ୍ଛବ ଯାଏ ସବୁଠିଁ ଦୁଇବନ୍ଧୁ ଏକତ୍ର ଥିବାର ଦେଖା ଯାଉଥାଏ ।

ସୁମନ୍ତ ଥିଲ ଅତ୍ୟନ୍ତ ସ୍ପଷ୍ଟବାଦୀ । ସେ ଯାହା ଠିକ୍ ବୋଲି ଭାବୁଥାଏ, ତାହାହିଁ କରୁଥାଏ ଓ ତାହାହିଁ କହୁଥାଏ । ନରେନ୍ଦ୍ର କଥାବାର୍ତ୍ତା ବହୁତ କମ୍ କହୁଥାଏ । ତା'ଛଡ଼ା ସେ କଥାବାର୍ତ୍ତାରେ ଥିଲ ନମ୍ର । ସେ ସର୍ବଦା ମଧୁର ଭାବରେ କଥା କହୁଥାଏ ।

ସେ ଗାଁରେ ଗୋଟିଏ ଆଖଡ଼ା ଥିଲ । ଯୁବକମାନେ ସେଠାରେ କୁସ୍ତି କସରତ୍ ସାଙ୍ଗକୁ ଅସି ଓ ଗଦାଚାଳନା ଇତ୍ୟାଦି ଶିକ୍ଷା କରୁଥିଲେ । ସେ ଆଖଡ଼ାରେ ଯିଏ ଥିଲେ ଶିକ୍ଷକ, ଦିନେ ତାଙ୍କ ଗୁରୁ ସେ ଗାଁକୁ ଆସିଲେ । ଗୁରୁଙ୍କ ନାମ ବୀର ସିଂହ ।

ବୀରସିଂହଙ୍କ ସହିତ ଗାଁର ଯୁବକମାନେ ଅସି ଖେଳିଲେ । ବୀରସିଂହ ସବା ଶେଷରେ ନରେନ୍ଦ୍ରକୁ କହିଲେ, "ବାପା, ତୋ ଭଳି କୁଶଳୀ ଓ ସାହସୀ ଯୁବକ ପାଇବା ସହଜ ନୁହେଁ । ମୁଁ ତୁମଭଳି ଜଣେ ଯୁବକକୁ ମୋର ପଟ୍ଟଶିଷ୍ୟ କରିବା ନିମନ୍ତେ ମନେ ମନେ ଖୋଜୁଥିଲି । ମୋ ସହିତ ଚାଲ । ତମେ ଦିନେ ବିଖ୍ୟାତ ହେବ ।"

"ନରେନ୍ଦ୍ର, ଏ ସୁଯୋଗ ଛାଡ଼ିବାର ନୁହେଁ ।" ସୁମନ୍ତ ନରେନ୍ଦ୍ରକୁ ପରାମର୍ଶ ଦେଲ ।



ଗାଁ ଲୋକେ ନରେନ୍ଦ୍ରକୁ ବୀର ନରେନ୍ଦ୍ର ବୋଲି ଆଖ୍ୟା ଦେଲେ । କିନ୍ତୁ ନରେନ୍ଦ୍ରର ବାପା ସେ ପ୍ରସ୍ତାବରେ ସମ୍ମତ ହେଲେ ନାହିଁ । ଫଳରେ ନରେନ୍ଦ୍ର ଯାଇପାରିଲା ନାହିଁ ।

କିଛିଦିନ ପରେ ସେ ଗାଁକୁ ଆସିଲେ ରାଜକବି । ଗାଁର ଉଦୀୟମାନ କବିମାନେ ସେମାନଙ୍କ କବିତାମାନ ତାଙ୍କୁ ଦେଖାଇଲେ । ନରେନ୍ଦ୍ରର କବିତା ପଢ଼ି ସେ ବହୁତ ଖୁସି ହେଲେ । ସେ କହିଲେ, "ବାପା! ତମେ ମୋ ସହ ଚାଲ । ତମକୁ ସାହିତ୍ୟ ପଢ଼ାଇବି । ରାଜଦରବାରରେ ସ୍ଥାନ କରିଦେବି ।"

ସୁମନ୍ତ ପୁଣି ନରେନ୍ଦ୍ରକୁ କହିଲା, "ଭାଇ, ତମେ ଏ ସୁଯୋଗ ଛାଡ଼ ନାହିଁ ।"

ନରେନ୍ଦ୍ର ଯାଇ ତା' ବାପାଙ୍କୁ ପଚାରିଲା ଓ ରାଜକବିଙ୍କୁ ନାସ୍ତି ବାଣୀ ଶୁଣାଇଦେଲା ।

ଇତିମଧ୍ୟରେ ଆଉ ଗୋଟିଏ ଘଟଣା ଘଟିଥାଏ । ସୁମନ୍ତର ସାନଭଉଣୀ ଶୀଳା ନରେନ୍ଦ୍ରକୁ ମନେ ମନେ ବହୁତ ପସନ୍ଦ କରିଥାଏ ଓ ଦିନେ ସେ ସେକଥା ତାକୁ କହିଦେଲା ମଧ୍ୟ । ଏହା ଜାଣି ସୁମନ୍ତ ଖୁସି ହେଲା ଓ ନରେନ୍ଦ୍ରକୁ ତା' ମତ ପଚାରିଲା ।

ନରେନ୍ଦ୍ର କହିଲା, "ସୁମନ୍ତ, ଶୀଳାକୁ ବିଭା ହେଲେ ମୁଁ ନିଜକୁ ଭାଗ୍ୟବାନ ମନେ କରିବି ।"

"ତେବେ ତ ଅତି ଆନନ୍ଦର କଥା । ଏଥିରେ ବା ସମସ୍ୟା କ'ଣ ?" ସୁମନ୍ତ ଉଲ୍ଲସିତ ଭାବରେ କହିଲା ।

"ତମେ ଯାଇ ମୋ ବାପାଙ୍କୁ କୁହ ।" ନରେନ୍ଦ୍ର କହିଲା ।

ସୁମନ୍ତ ଯାଇ ନରେନ୍ଦ୍ରର ବାପାଙ୍କୁ ଭଉଣୀ ବାହାଘର ସକାଶେ ପ୍ରସ୍ତାବ ଦେଲା । ସେ ଗମ୍ଭୀର ହୋଇ କହିଲେ, "ନରେନ୍ଦ୍ର ଶୀଳାକୁ ବିଭା ହେବାରେ ମୋର ଆପତ୍ତି ରହିବ ନାହିଁ—ଯଦି ମୋର ସର୍ତ୍ତ ପୂର୍ଣ୍ଣ କରିବ ।"

"କ'ଣ ଆପଣଙ୍କ ସର୍ତ୍ତ ?"

"ହ୍ରଦ ପାଖରେ ଥିବା ତମର ସେ ଜମି ଖଣ୍ଡିକ ମୋ ପୁଅକୁ ଦେଇଦେବାକୁ ପଡ଼ିବ ।"

ସୁମନ୍ତ ସ୍ତବ୍ଧ ହୋଇ ରହିଲା । ସେ ତା'ପରେ କହିଲା, "କକା! ମୋର ବାପା ମା ନାହାନ୍ତି । ଆପଣ ମୋର ବାପା ଭଳି ।



ସେ ଜମିଖଣ୍ଡିକ ହିଁ ମୋର ଭରସା । ମୁଁ ମୋ ଭଉଣୀକୁ ଯଥା ସମ୍ଭବ ଉପହାର ଦେବି । କିନ୍ତୁ ସେ ଖଣ୍ଡିକ ଦେଇଦେଲେ ମୁଁ ଚଳିବି କିପରି ?"

"ମୁଁ କ'ଣ ସେ ଖଣ୍ଡିକ ଦେବାକୁ ପ୍ରଥମେ କହିଲି ? ତମେ୍ ତମ ଭଉଣୀ ବିବାହ କଥା ପ୍ରଥମେ କହିଲ ।" କ୍ଷୁବ୍ଧ କଣ୍ଠରେ ଭଦ୍ରଲୋକ କହିଲେ ।

ସୁମନ୍ତ ଟିକିଏ ଭାବି କହିଲା, "ହଉ । ପରେ କହିବି ।" ସେ ତା'ପରେ ନରେନ୍ଦ୍ରକୁ ସବୁ କହି ତା' ପ୍ରତିକ୍ରିୟାକୁ ଅପେକ୍ଷା କଲା । ନରେନ୍ଦ୍ର ମୁହଁ ଶୁଖାଇ କହିଲା, "ମୁଁ ତେବେ କରିବି କ'ଣ ?"

ସୁମନ୍ତ ସଙ୍ଗେ ସଙ୍ଗେ ପୁଣି ଯାଇ ନରେନ୍ଦ୍ରର ବାପାଙ୍କୁ କହିଲା, "ସେ ଜମି ଖଣ୍ଡିକ ମୁଁ ଦେଇ ଦେବି । ବିବାହ ବ୍ୟବସ୍ଥା କରନ୍ତୁ ।"

ଏହାପରେ ଶୀଳା ସହ ନରେନ୍ଦ୍ରର ବିବାହ ହେବାରେ ଆଉ କୌଣସି ଅସୁବିଧା ନଥିଲା ।

ବିବାହ ପରେ ପରେ ନରେନ୍ଦ୍ରର ବାପା ଓ ମାଆ ଅସୁସ୍ଥ ହୋଇ ପଡିଲେ । କ୍ରମେ ଶୀଳା ଉପରେ ଘରର ସମସ୍ତ ଦାୟିତ୍ୱ ପଡିଲା । କେଇମାସ ଭିତରେ ଦେଖାଗଲା, ଶୀଳା ତା' ଶାଶୁ ଶ୍ୱଶୁରଙ୍କ ପ୍ରତି ଦୁର୍ବ୍ୟବହାର କରୁଛି । ଦିନେ ସୁମନ୍ତ କହିଲା, "ଶୀଳା, ତୁ ତୋ ଶାଶୁ ଶ୍ୱଶୁରଙ୍କ ସେବା କରୁ ନାହୁଁ । ଏହା କ'ଣ ବୋହୂର କର୍ତ୍ତବ୍ୟ ?"

ଶୀଳା ଖେକ୍‌ଟୋକ୍ କହିଲା, "ଭାଇ, ସେମାନେ ମୋତେ ବୋହୂ କରି ପାଇବା ନିମନ୍ତେ ସେମାନଙ୍କ ପୁଅ ସହ ମୋର ବିବାହ କରାଇ ନାହାନ୍ତି । ସେମାନେ ତମର ସେ ମୂଲ୍ୟବାନ ଜମି ଖଣ୍ଡିକ ଯୌତୁକ ପାଇବା ପାଇଁ ବିବାହ କରାଇଛନ୍ତି । ମୋର ସେମାନଙ୍କ ପ୍ରତି କର୍ତ୍ତବ୍ୟ ନାହିଁ ।"

ସୁମନ୍ତ ଶୀଳା ଉପରେ ବିରକ୍ତ ହେଲା । ଶୀଳା କାନ୍ଦିଲା, କିନ୍ତୁ ତା' ବ୍ୟବହାର ବଦଳାଇବାର ପ୍ରତିଶ୍ରୁତି ଦେଲା ନାହିଁ କି ବଦଳାଇଲା ନାହିଁ । ସୁମନ୍ତ ନରେନ୍ଦ୍ରକୁ କହିଲା, "ଦେଖ୍, ଶୀଳା ତମ ବାପା ମା'ଙ୍କ

ପ୍ରତି ଚାତୁରୀ କରିବା ମୋତେ ଭଲ ଲାଗୁନାହିଁ । ତମେ ତାକୁ କଡ଼ା କରି କହିଦିଅ ।"

"ମୁଁ କ'ଣ କରିବି?" ନରେନ୍ଦ୍ର ଉତ୍ତର ଦେଲା ।

ଏହାର ଛଅମାସ ପରେ ରାଜା ଘୋଷଣା କଲେ କି ଦରବାରରେ ବିଭିନ୍ନ ପଦ ପାଇଁ ସେ କେତେଜଣ ଯୋଗ୍ୟ ଯୁବକ ଚାହାନ୍ତି । ଏ ଘୋଷଣା ଶୁଣି ଉଭୟ ସୁମନ୍ତ ଓ ନରେନ୍ଦ୍ର ରାଜଧାନୀ ଅଭିମୁଖେ ଚାଲିଲେ । ଦୈବକୁ ଅଧା ବାଟରେ ସେମାନେ ରାଜାଙ୍କୁ ଭେଟିଲେ । ରାଜା ବଣ ପାଖରେ ତମ୍ବୁ ପକାଇଥିଲେ ।

ଦୁହେଁ ବେଲ ଉଣ୍ଡି ରାଜାଙ୍କୁ ଅଭିବାଦନ କଲେ ଓ ସେମାନଙ୍କ ଉଦ୍ଦେଶ୍ୟ ଜଣାଇଲେ । ରାଜା କହିଲେ, "ମୋର ପ୍ରୟୋଜନ ସାହସୀ ଯୁବକ । ସାହସର ପରୀକ୍ଷା ଦେବାକୁ ପ୍ରସ୍ତୁତ? ଜବାବ ଦେଇ ଅନ୍ୟଥା କଲେ ଚଳିବ ନାହିଁ ।"

"ଛାମୁ! ଆମେ ପ୍ରସ୍ତୁତ ।" ଦୁହେଁ କହିଲେ ।

ରାଜା ସେଦିନ ବଣ ଭିତରୁ ଯୋଡ଼ିଏ ବାଘ ଜୀଅନ୍ତା ଧରିଥିଲେ । ସେ ଦୁଇଟି ଯନ୍ତାରେ ଥିଲେ । ରାଜା ସୁମନ୍ତକୁ କହିଲେ, "ତମକୁ ଏ ଯନ୍ତାରେ ପଶିବାକୁ ହେବ ।"

"ମହାରାଜ! ମୁଁ ସିନା ସାହସର ପରିଚୟ ଦେବି, କିନ୍ତୁ ଜାଣି ଜାଣି ଜୀବନ ଦେବି ବୋଲି ତ କହି ନଥିଲି!" ସୁମନ୍ତ କହିଲା ।

ରାଜା ନରେନ୍ଦ୍ର ଆଡ଼େ ଅନାଇ କଠୋର କଣ୍ଠରେ କହିଲେ, "ତମେ ଯନ୍ତାରେ ପଶ ।"



"ହଁ, ମହାରାଜ!" କହି ନରେନ୍ଦ୍ର ଯନ୍ତା ଆଡ଼େ ଅଗ୍ରସର ହେଲା ।

ସୁମନ୍ତ ସଙ୍ଗେ ସଙ୍ଗେ ଆଗକୁ ଡେଇଁପଡ଼ି ନରେନ୍ଦ୍ରର ବାଟ ଓଗାଳି ରାଜାଙ୍କୁ କହିଲା, "ମହାରାଜ! ମୋତେ ଏଭଳି ଆଚରଣ ପାଇଁ ଆପଣ ଦଣ୍ଡ ଦିଅନ୍ତୁ । କିନ୍ତୁ ଏ ଭାଇକୁ କ୍ଷମା କରନ୍ତୁ । ମୋ ଭଉଣୀ ବିଧବା ହେବା ଆପଣ କେବେ ବି ଚାହିଁବେ ନାହିଁ ନିଶ୍ଚୟ!"

ରାଜା ସୁମନ୍ତକୁ କୁଣ୍ଢାଇ ପକାଇ କହିଲେ, "ତମେ ବାସ୍ତବିକ ସାହସୀ! ତମକୁ ମୁଁ ଏହିକ୍ଷଣି ମୋର ପ୍ରତିନିଧି ଭାବରେ ନିଯୁକ୍ତ ଦେଲି ।"

ବେତାଳ କାହାଣୀଟି ଏହିଠାରେ ସମାପ୍ତ କରି ଟିକିଏ ନୀରବ ରହି ତା'ପରେ ତୀବ୍ର କଣ୍ଠରେ ପ୍ରଶ୍ନ କଲା, "ରାଜା! ନରେନ୍ଦ୍ର ବୀର ବୋଲି ସମସ୍ତେ ଜାଣିଥିଲେ। ପୁଣି ସୁମନ୍ତ୍ର ବାଘ ଯନ୍ତାରେ ପଶିବା ପ୍ରସ୍ତାବ ଶୁଣି ପଛଘୁଞ୍ଚା ଦେବା ସ୍ଥଳେ ନରେନ୍ଦ୍ର ସାହସର ପରିଚୟ ଦେଇ ସେଥିରେ ପଶିବାକୁ ଯାଉଥିଲା। ଏହା ସତ୍ତ୍ୱେ ନରେନ୍ଦ୍ର ତାକୁ ଭୀରୁ ବୋଲି ଅଭିହିତ କରିବାର ଯୁକ୍ତି କ'ଣ? ପୁଣି ରାଜା ବା ନରେନ୍ଦ୍ରକୁ ସାହସୀ ନକହି ସୁମନ୍ତ୍ରକୁ ସାହସୀ କହିବାର ଯୁକ୍ତି କ'ଣ? ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ। ଉତ୍ତର ଦେବାର ସାମର୍ଥ୍ୟ ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ।"

କ୍ଷଣେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ, "ନରେନ୍ଦ୍ରର ବ୍ୟକ୍ତିତ୍ୱ ବୋଲି କିଛି ନଥିଲା, ଯଦିଓ ତା'ର ପ୍ରତିଭା ଥିଲା। ସେ ତା' ବାପା ଆଗରେ ଯେପରି ଭୀରୁ, ସ୍ତ୍ରୀ ଆଗରେ ବି ସେହିପରି ଭୀରୁ। ତେଣୁ ଶୀଳ ତା' ବାପା ମା' ପ୍ରତି ଦୁର୍ବ୍ୟବହାର କରିବା ସତ୍ତ୍ୱେ ସେ କିଛି କହିପାରୁ ନଥିଲା। ସେ ଯେ ବାଘଯନ୍ତାରେ ପଶିବାକୁ ଉଦ୍ୟତ ହେଉଥିଲା, ତାହା ରାଜାଙ୍କ ପ୍ରତି ଭୟ ଯୋଗୁଁ! ସୁମନ୍ତ୍ର ତାକୁ ମର୍ମେ ମର୍ମେ ଚିହ୍ନିଥିଲା। ରାଜାଦେଶ ଲଂଘନ କରି ଦଣ୍ଡିତ ହେବାର ଆଶଙ୍କା ସତ୍ତ୍ୱେ ସୁମନ୍ତ୍ର ବିବେକ ଅନୁସାରେ କାମ କରି ନରେନ୍ଦ୍ରକୁ ଅଟକାଇ ଦେଲା। ତେଣୁ ସେ ପ୍ରକୃତ ସାହସୀ। ଭଉଣୀର ମନକାମନା ପୂର୍ଣ୍ଣ କରିବା ପାଇଁ ସେ ଯେପରି ନିଜ ଜମି ତ୍ୟାଗ କରିଥିଲା, ଏ କ୍ଷେତ୍ରରେ ସେହିପରି ନିଜ ସ୍ୱାର୍ଥ ଭୁଲି ଦଣ୍ଡ ପାଇବାକୁ ପ୍ରସ୍ତୁତ ଥିଲା।"

ରାଜାଙ୍କ ଉତ୍ତର ଦାନ ଶେଷ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ସେ ବୃକ୍ଷ ଡାଳରେ ଝୁଲି ପଡ଼ିଲା। (କଳ୍ପିତ)





# ସଫଳ ପଦକ୍ଷେପ

ସେତେବେଳେ ସୁବର୍ଣ୍ଣଗିରି ରାଜ୍ୟରେ ରାଜୁତି କରୁଥିଲେ ରାଜା ଦେବବର୍ମା । ଜଣେ ବୁଦ୍ଧିମାନ ତଥା ସୁଶାସକ ଭାବରେ ତାଙ୍କର ବିଶେଷ ଖ୍ୟାତି ଥିଲା ।

ଦିନେ ସେଠାକାର ବିଚାରକ ଗୋଟିଏ ବ୍ୟାପାରରେ ବଡ଼ ଅଡୁଆରେ ପଡିଲେ । କୌଣସି ପ୍ରକାର ରାୟ ଦେଇ ପାରିଲେ ନାହିଁ । କଥା ହେଲା, ଗୋଟିଏ ଟଙ୍କା ଥଳି ଉପରେ ଦୁଇଜଣ ବ୍ୟକ୍ତି ନିଜ ନିଜର ଅଧିକାର ସାବ୍ୟସ୍ତ କରିବାକୁ ଚେଷ୍ଟା କରୁଥିଲେ । କୌଣସି ମତେ ପ୍ରକୃତରେ ସେ ଥଳିର ମାଲିକ କିଏ, ସେକଥା ବିଚାରକ କିମ୍ବା ତାଙ୍କ ସହାୟକମାନେ କେହି ବୁଝିପାରୁ ନଥିଲେ । ଅନେକ ଯୁକ୍ତି, ଅନେକ ସାକ୍ଷ୍ୟ ପ୍ରମାଣ ବିଚାରକୁ ନିଆ ହୋଇଥିଲା । ତଥାପି ସମସ୍ୟାର ସମାଧାନ ହୋଇପାରୁ ନଥିଲା ।

ଦୁଇଜଣଙ୍କ ପକ୍ଷରେ ସମାନ ଯୁକ୍ତି, ସମାନ ପ୍ରମାଣ ରହିଥିଲା ବୋଲି ବିଚାରକମାନଙ୍କର ମନେ ହେଲା । ସେମାନେ କ'ଣ କରିବେ କିଛି ବୁଝି ପାରିଲେ ନାହିଁ । ତେଣେ ନିର୍ଦ୍ଦିଷ୍ଟ ସମୟ ଭିତରେ ସବୁ ମକଦ୍ଦମାର ବିଚାର ଶେଷ ହେବା ଦରକାର ବୋଲି ରାଜାଙ୍କ ନିର୍ଦ୍ଦେଶ ଥାଏ । ସେମାନେ ରାଜାଙ୍କ ନିର୍ଦ୍ଦେଶ ଲଂଘନ କରିବାକୁ ପ୍ରସ୍ତୁତ ନଥିଲେ । ଅଗତ୍ୟା ସେମାନେ ଶେଷ ପନ୍ଥା ଗ୍ରହଣ କଲେ ।

ଅର୍ଥାତ୍ ସେମାନେ ସେ ମାମଲା ରାଜାଙ୍କ ପାଖକୁ ଆଣିଲେ । ସେ ସବୁ ଶୁଣିଲେ । ଦୁଇ ବ୍ୟକ୍ତିଙ୍କ ଆଡକୁ ସେ କଟମଟ କରି କିଛି ସମୟ ଅନାଇ ରହିଲେ । ତା'ପରେ ଗମ୍ଭୀର ଭାବରେ କହିଲେ, "ମୁଁ ଜାଣେ, ଏହା କାହାର । ଥଳି ହେଇଛି ଆଗରେ ରଖିଲି । ଯିଏ ଏହାର ପ୍ରକୃତ ମାଲିକ, ସିଏ ଉଠାଇ ନେଉ ।"

ସୁରେନ୍ଦ୍ର

ରାଜା ଏ ଘୋଷଣା କରିସାରିବା ମାତ୍ରେ ଜଣେ ବ୍ୟକ୍ତି ନିର୍ଭୟରେ ଆଗକୁ ପାଦେ ବଢ଼ି ଥଳିଟି ଉଠାଇ ନେଲା । ରାଜା କହିଲେ, "ବେଶ୍ । ଏହା ତମର ବୋଲି ମୁଁ ଜାଣେ । ବର୍ତ୍ତମାନ ମୁଁ କହିବି କିପରି ଜାଣିଲି । କିନ୍ତୁ ଥରେ ମୁଁ ସେ ରହସ୍ୟ ପ୍ରକାଶ କରିବା ପରେ ମିଥ୍ୟାବାଦୀକୁ ପ୍ରାଣଦଣ୍ଡ ଦେବାକୁ ହେବ । କହୁଛି…"

ରାଜା ଏତିକି କହିସାରିବା ମାତ୍ରେ ଦ୍ୱିତୀୟ ବ୍ୟକ୍ତି ତାଙ୍କ ଗୋଡ଼ତଳେ ପଡ଼ିଯାଇ କହିଲା, "ହଜୁର! ମୋର ଅପରାଧ ହୋଇଛି । ମୋତେ ପ୍ରାଣଦଣ୍ଡ ଦିଅନ୍ତୁ ନାହିଁ ।" ଏହାପରେ ଲୋକଟି କାହିଁକି କିପରି ମିଛରେ ଜାଲ ପକାଇ ବିଗୃରକମାନଙ୍କୁ ଧନ୍ଦାରେ ପକାଇ ଦେଇଥିଲା, ସେକଥା ମାନିଗଲା । ରାଜା ତାକୁ ଅଳ୍ପ ଦଣ୍ଡ ଦେଲେ ।

ମନ୍ତ୍ରୀ ପରଦିନ ପଚାରିଲେ, "ଆପଣ କିପରି ସତ କଥାଟି ଜାଣିଲେ ?"

ରାଜା କହିଲେ, "ଆରେ ବାବୁ, ମୁଁ ଗୋଟାଏ ଗୃଲ୍ ଖେଳିଲି । ଯୁକ୍ତି, ବାଦବିତଣ୍ଡା, ସାକ୍ଷ୍ୟ ପ୍ରମାଣ, ଏସବୁରେ ଦୁହେଁ ଦାଲିଆ ହୋଇଯାଇଥିଲେ । ମୁଁ ଯେତେବେଳେ ସରଳ ଭାବରେ କହିଲି ଯାହାର ଟଙ୍କା ସିଏ ନେଇନେଉ, ପ୍ରକୃତରେ ଯାହାର ଟଙ୍କା ସ୍ୱତଃସ୍ଫୂର୍ତ୍ତ ଭାବରେ ସେ ଆଗକୁ ଆସିଗଲା । ଟଙ୍କା ଯାହାର ନୁହେଁ, ସିଏ ତ ପୂରାପୂରି ମିଥ୍ୟା ସାକ୍ଷ୍ୟ ପ୍ରମାଣ ଯୁକ୍ତି ତର୍କ ଉପରେ ନିର୍ଭର କରୁଥିଲା । ତେଣୁ ସ୍ୱତଃସ୍ଫୂର୍ତ୍ତ ଭାବରେ ସିଏ ଆସିପାରିଲା ନାହିଁ । ପରେ ସବୁ ଜଣା ପଡ଼ିଗଲା ।" ରାଜା କହିଲେ ।

ମନ୍ତ୍ରୀ ଆନନ୍ଦିତ ହେଲେ ।

ରାଜା କହିଲେ, "ଗୋଟିଏ କଥାରେ ମୋର ପୂର୍ଣ୍ଣ ବିଶ୍ୱାସ ଅଛି । ତାହା ହେଲା, ସତ୍ୟର ଶକ୍ତି ସର୍ବଦା ବେଶି । ତେବେ ବେଳ ଦେଖି ସେ ଦିଗରେ ଯାହା କରିବାର କରି-ପାରିଲେ ଯାଇ ଫଳ ହୁଏ, ନହେଲେ ହୁଏ ନାହିଁ । ବିଳମ୍ବରେ ହୁଏ ।"



# "ଜହ୍ନମାମୁଁ"ର ସାନନ୍ଦ ନିମନ୍ତ୍ରଣ

## ମହାନ
## ଭାରତୀୟ ଐତିହ୍ୟ
## ଉପରେ ପ୍ରଶ୍ନ

### ଛଅ ପର୍ଯ୍ୟାୟରେ

**ପ୍ରତିଯୋଗିତା—୧**

ଛବିଟିର ପଶ୍ଚାତ ନାୟକ ଚିହ୍ନ



**ପ୍ରତିଯୋଗିତା—୨**

ଛବିଟିର ପଶ୍ଚାତ ସ୍ୱାମୀ ଚିହ୍ନ



**ପ୍ରତିଯୋଗିତା—୩**

ଛବିଟିର ପଶ୍ଚାତ ଯୁଗ



**୧,୩୦,୦୦୦ ଟଙ୍କା ମୂଲ୍ୟରୁ ଊର୍ଦ୍ଧ୍ୱ ପୁରସ୍କାର ବଣ୍ଟନ ହେବ !**

୧୧ ଟି ଭାଷାରେ ପ୍ରତିଯୋଗିତା ପାଇଁ
ଅଲଗା ଅଲଗା ପୁରସ୍କାର

୧୧ଟି ପ୍ରଥମ ପୁରସ୍କାର : ୨୦୦୦ ଟଙ୍କାର ବଣ୍ଡ
୧୧ଟି ଦ୍ୱିତୀୟ ପୁରସ୍କାର : ୧୦୦୦ ଟଙ୍କାର ବଣ୍ଡ
୧୧ଟି ତୃତୀୟ ପୁରସ୍କାର : ୫୦୦ ଟଙ୍କାର ବଣ୍ଡ

**ଏତାଲିକା ବିଶିଷ୍ଟ ପୁରସ୍କାର**

୧ମ ବିଶିଷ୍ଟ ପୁରସ୍କାର:୧୦,୦୦୦ ଟଙ୍କାର ବଣ୍ଡ
୨ୟ ବିଶିଷ୍ଟ ପୁରସ୍କାର: ୫୦୦୦ ଟଙ୍କାର ବଣ୍ଡ
୩ୟ ବିଶିଷ୍ଟ ପୁରସ୍କାର:୨୫୦୦ ଟଙ୍କାର ବଣ୍ଡ
*ପାଞ୍ଚବର୍ଷରେ ପାଞ୍ଚଟି ସମାନ କିସ୍ତିରେ ପ୍ରଦାନ ହେବ
ଆହୁରି ମଧ୍ୟ ୨୨୦ଟି ସାନ୍ତ୍ୱନା ପୁରସ୍କାର—
ଦର୍ଶକ ପାଇଁ 'ଜହ୍ନମାମୁଁ'ର ଗ୍ରାହକଙ୍କ !

## ପ୍ରତିଯୋଗିତାରେ କିପରି ଭାଗ ନେବ

ନିଜର ଇତିହାସ ଜାଣ, ପୁରୁଣା ଜହ୍ନମାମୁଁ ସହ ପରିବାରର ସମସ୍ତଙ୍କୁ ନେଇ ବସିପାର । ଏଠାରେ ଭାରତର ସୁନାମ ଓ ଇତିହାସର ପ୍ରଖ୍ୟାତ ଲୋକମାନଙ୍କ ଛବି ଦିଆଯାଇଛି । ସେମାନଙ୍କୁ ଚିହ୍ନିବା ପାଇଁ ଛବିରେ କିଛି ସଙ୍କେତ ରହିଛି । ସେ ସଙ୍କେତ ଅନୁସରଣ କରି ନିର୍ଦ୍ଦିଷ୍ଟ ଚତୁଷ୍କୋଣରେ ଠିକ ସଂଖ୍ୟାଗୁଡ଼ିକ ଲେଖିଦିଅ । ତା'ପରେ ଛଅଜଣ ଲୋକଙ୍କ ଭିତରୁ ଜଣକୁ ବାଛି ନିଅ । ପର ପୃଷ୍ଠାରେ ଥିବା ବାକ୍ୟର ଅପୂର୍ଣ୍ଣ ଅଂଶକୁ ଖାଲିଥିବା ସ୍ଥାନରେ ପୂରଣ କର । ପନ୍ଦରରୁ ଅଧିକ ଶବ୍ଦ ବ୍ୟବହାର କରିବ ନାହିଁ । ନିଜ ଉତ୍ତର ଯେପରି ସୁନ୍ଦର ହୁଏ ! କାରଣ ସବୁଠୁଁ ଭଲ ଉତ୍ତର ପାଇଁ ପୁରସ୍କାର ଅଛି ।

ତୁମ ନାମ, ଠିକଣା ଓ ବୟସ ନିର୍ଦ୍ଦିଷ୍ଟ ସ୍ଥାନରେ ଲେଖି ପୃଷ୍ଠାଟି କାଟି ଆମ ପାଖକୁ ଡାକରେ ପଠାଅ । ଏହାର ଫଳ ଘୋଷଣା ହେବା ପୂର୍ବରୁ ଦ୍ୱିତୀୟ ଓ ତୃତୀୟ ପ୍ରତିଯୋଗିତାର ଘୋଷଣା ପାଇଁ ଜହ୍ନମାମୁଁର ପରବର୍ତ୍ତୀ ସଂଖ୍ୟାକୁ ଅପେକ୍ଷା କର ।

## ନିୟମାବଳୀ

୧. ୧୬ ବର୍ଷରୁ କମ୍ ବୟସ୍କ ସମସ୍ତ ବାଳକବାଳିକାଙ୍କ ପାଇଁ ଏ ପ୍ରତିଯୋଗିତା ଉଦ୍ଦିଷ୍ଟ । ଜଣେ ଯେତେ ସଂଖ୍ୟାରେ ଇଚ୍ଛା ସେତେ ସଂଖ୍ୟାରେ ଫର୍ମ ପୂରଣ କରିପାରେ—କିନ୍ତୁ 'ଜହ୍ନମାମୁଁ'ରେ ଥିବା ଫର୍ମ ହେବା ଗ୍ରାହ୍ୟ ।

୨. ଜଣେ ଗୋଟିଏ ବା ଅନେକଗୁଡ଼ିଏ ପର୍ଯ୍ୟାୟର (ଭାରତର ପ୍ରଖ୍ୟାତ ନରପତି, ପ୍ରଖ୍ୟାତ ନାରୀ ଓ ପ୍ରଖ୍ୟାତ ପୁରୁଷ) ପ୍ରତିଯୋଗିତାରେ ଭାଗ ନେଇପାରେ । ଜଣେ ପ୍ରତିଟିରେ ବି ୧ମ ପୁରସ୍କାର ପାଇବାକୁ ହକ୍‌ଦାର ସେ ବିଶେଷ ପ୍ରତିଯୋଗିତାରେ ମଧ୍ୟ ଭାଗ ନେଇପାରେ ।

୩. ଉତ୍ତର ଭାବରେ ଫର୍ମ ପୂରଣ ହୋଇପାରେ । ଜହ୍ନମାମୁଁ ପ୍ରକାଶ ପାଉଥିବା ୧୧ ଟିରୁ ଯେ କୌଣସି ଭାଷାରେ ।

୪. ପ୍ରଥମ ପ୍ରତିଯୋଗିତା ପାଇଁ ପ୍ରବେଶିକା ଫର୍ମ ୩୧ ତାରିଖ ଅକ୍ଟୋବର ୧୯୮୭ ପୂର୍ବରୁ ଆମ ପାଖରେ ପହଞ୍ଚିବା ଦରକାର ।

୫. ପ୍ରବେଶିକା ଫର୍ମର ପହଞ୍ଚିବାରେ ବିଳମ୍ବ ବା ଡାକରେ ହଜିଯିବା ଅଥବା ଭିଜିଯିବା ପାଇଁ ସଂଗଠନ ଦାୟୀ ନୁହେଁ ।

୬. ପ୍ରବେଶିକା ଫର୍ମ ସାଧାରଣ ଡାକରେ ଆସିବା ଗ୍ରାହ୍ୟ ।

୭. କେବଳ ଚନ୍ଦାମାମା ପବ୍ଲିକେସନ୍ସ ଓ ପ୍ରସାଦ ପ୍ରସେସ୍ ଏସୋସିଏଟ୍ସର କର୍ମଚାରୀବୃନ୍ଦ ଓ ସେମାନଙ୍କ ପରିବାରବର୍ଗଙ୍କୁ ଛାଡ଼ି ଭାରତର ଯେ କୌଣସି ନାଗରିକ ଏଥିରେ ଅଂଶ ଗ୍ରହଣ କରିପାରିବେ ।

ପ୍ରବେଶିକା ଫର୍ମ ସବୁ ଗୋଟିଏ ବିଶେଷ ବିଚାରକମଣ୍ଡଳୀ ବିଚାର କରିବେ । ସେମାନଙ୍କ ସିଦ୍ଧାନ୍ତ ଚୂଡ଼ାନ୍ତ ବିବେଚିତ ହେବ ।

୯. ବିଜେତାମାନଙ୍କ ନାମ ଜହ୍ନମାମୁଁରେ ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ସେମାନଙ୍କୁ ଡାକ ଯୋଗେ ମଧ୍ୟ ଜଣାଇ ଦିଆଯିବ ।

**ବିଶିଷ୍ଟ ପ୍ରତିଯୋଗିତା ପାଇଁ ବିଶେଷ ଘୋଷଣା**

ପ୍ରବେଶିକା ଫର୍ମ ଡାକରେ ପଠାଇବା ପୂର୍ବରୁ ସେଥିରୁ "ଜହ୍ନମାମୁଁ ପ୍ରତିଯୋଗିତା-୧" ଲେଖାଥିବା ଲେବେଲ୍ କାଟି ରଖ । ପରବର୍ତ୍ତୀ ଦୁଇଟି ପ୍ରତିଯୋଗିତା ପାଇଁ ମଧ୍ୟ ତାହାହିଁ କର । ଡିସେମ୍ବର ସଂଖ୍ୟାରେ ବିଶିଷ୍ଟ ପ୍ରତିଯୋଗିତା ପ୍ରବେଶିକା ଫର୍ମ ବାହାରିବ । ଏ ତିନୋଟିଯାକ ଲେବେଲ୍ ସେ ଫର୍ମ ଉପରେ ଲଗାଇବାକୁ ହେବ । ତେବେ ଯାଇ ବିଶିଷ୍ଟ ପ୍ରତିଯୋଗିତାରେ ଜଣେ ଭାଗ ନେଇ ପାରିବ ।

ଏ 'ଜହ୍ନମାମୁଁ' ଖଣ୍ଡିକ ସାଇତି ରଖ । ବିଶିଷ୍ଟ ପ୍ରତିଯୋଗିତା ସକାଶେ ପ୍ରଶ୍ନମାନ ସେପ୍ଟେମ୍ବର, ଅକ୍ଟୋବର ଓ ନଭେମ୍ବର ସଂଖ୍ୟା ଜହ୍ନମାମୁଁ ଉପରେ ଆଧାରିତ ହେବ ।

# ପ୍ରତଯୋଗିତା ୧

[illegible]

(ପ୍ରବେଶିକା ଫର୍ମ)







ନମୁନା ଅବଲମ୍ବନ କର ଏ ଛଅଜଣ ରାଜାଙ୍କ ଛବି ସହ ନାମର ଯୋଗାଯୋଗ କର ଠିକ୍ ନମ୍ବରଟି ଲେଖ ।

| | | | | | |
|---|---|---|---|---|---|
| ଟିପୁ ସୁଲ୍ତାନ | ୧ | ଶାହ୍‌ଜାହାନ | ୪ | ପୃଥୁ | ୭ |
| କୁବେର | ୨ | ଧୃତରାଷ୍ଟ୍ର | ୫ | ଶିବାଜୀ | ୮ |
| ଶେରଶାହ | ୩ | ଭଗୀରଥ | ୬ | ଦଶରଥ | ୯ |







ଏ ଲେବେଲ୍ ଖଣ୍ଡିକ ବଶିଷ୍ଟ ପ୍ରତଯୋଗିତା ପାଇଁ ରଖ
ଯେତେବେଳେ ବଶିଷ୍ଟ ପୁରସ୍କାର ପାଇଁ ଉଦ୍ୟମ କରିବ (ଡିସେମ୍ବର ସଂଖ୍ୟା
ଦେଖିବା ପରେ) ସେତେବେଳେ ଏ ଲେବେଲ୍ ଖଣ୍ଡିକ ପ୍ରତଯୋଗିତା
ଫର୍ମ ଉପରେ ଲଗାଇବାକୁ ହେବ ।

ଜହ୍ନମାମୁଁ ପ୍ରତଯୋଗିତା
୧

## ପ୍ରତିଯୋଗିତା ୧ (ପ୍ରବେଶିକା ଫର୍ମ)

ବର୍ତ୍ତମାନ ଉପରୋକ୍ତ ପୃଷ୍ଠାରେ ଥିବା ଛଅ ଛବିରୁ ଯେ କୌଣସି ଜଣେ ରାଜାଙ୍କ ଛବି ବାଛ ଓ ନିମ୍ନୋକ୍ତ ବାକ୍ୟଟି ପୂରଣ କର । "କାରଣ" ଶବ୍ଦ ପରେ ପନ୍ଦରରୁ ଅଧିକ ଶବ୍ଦ ବ୍ୟବହାର କରିବ ନାହିଁ ।

"ମୁଁ ରାଜା .................................................. ହେବାକୁ ପସନ୍ଦ କରିଥାନ୍ତି, କାରଣ ..................................................

..................................................

..................................................

ନାମ ..................................................

ବୟସ ........ ଠିକଣା ..................................................

..................................................

ଏ କାଗଜ ଖଣ୍ଡିକ କାଟି ନିଅ । କୁପନ୍ ଖଣ୍ଡିକ ପାଖରେ ରଖ । ପ୍ରବେଶିକା ଫର୍ମ ପଠାଇବା ବେଳେ ଲଫାଫା ଉପରେ "ପ୍ରତିଯୋଗିତା ୧" ବୋଲି ଉଲ୍ଲେଖ କରିବ ।

ପଠାଇବାର ଠିକଣା :
ଜହ୍ନମାମୁଁ ପ୍ରତିଯୋଗିତା ୧
ଚନ୍ଦାମାମା ପବ୍ଲିକେସନ୍ସ୍
୧୮୮ ଆର୍କୋଟ ରୋଡ଼
ମାଡ୍ରାସ ୬୦୦ ୦୨୬

ପ୍ରତିଯୋଗିତା ୧ ର ଶେଷ ତାରିଖ—୩୧ ଅକ୍ଟୋବର ୧୯୮୬

ଏ ଲେବେଲ୍ ଖଣ୍ଡିକ ବିଶିଷ୍ଟ ପ୍ରତିଯୋଗିତା ପାଇଁ ରଖ



# ଅମ୍ବର ଦୁର୍ଗ

ରାଜସ୍ଥାନର ଜୟପୁର ନଗରୀ ପାଖରେ ଅମ୍ବର ଦୁର୍ଗ ଅବସ୍ଥିତ । ଏକଦା ଏହା ଧୁଣ୍ଡାର ନାମକ ରାଜ୍ୟର ରାଜଧାନୀ ଥିଲା । ବହୁ ସଂଖ୍ୟକ ମନୋରମ ଅଟ୍ଟାଳିକା, ଗମ୍ବୁଜ, ପ୍ରାସାଦ ଭିତରେ ଅଙ୍କାବଙ୍କା ପଥ ସମନ୍ୱିତ ଏ ଦୁର୍ଗର ବହୁ ଭାଗ ମାର୍ବଲ ପଥରରେ ନିର୍ମିତ । ଏହା ଗୋଟିଏ ପର୍ବତ ଉପରୁ ତଳକୁ ବ୍ୟାପ୍ତ ହୋଇ ରହିଛି ।





ଦେବୀ ଅମ୍ବାଙ୍କ ନାମରୁ ଅମ୍ବର ଗଡର ସୃଷ୍ଟି । ଏ ମୂଳକର ସୁପ୍ରାଚୀନ ଶାସକ 'ମୀନ' ବଂଶ ଜନନୀ ଅମ୍ବାଙ୍କ ପୂଜା କରୁଥିଲେ । ଏକଦା ଏ ସ୍ଥାନର ନାମ ଥିଲା ଅମ୍ବାବତୀ । ମୀନ ବଂଶ ଏଠାରେ ଦୁର୍ଗ ସ୍ଥାପନ କରିଥିଲେ ନିରାପତ୍ତା ଦୃଷ୍ଟିରୁ ।

ଦଶମ ଶତାବ୍ଦୀର କଥା । ଦ୍ୱାଲଅରଠିଁ ରହୁଥିବା ଗୋଟିଏ କଚ୍ଛ ରାଜପରିବାର ଉପରେ ଶତ୍ରୁମାନେ ଆକ୍ରମଣ କଲେ । ତାଙ୍କ ଶିଶୁ ପୁତ୍ରକୁ ଧରି ରାଣୀ ତାଙ୍କ ନଅରରୁ ଖସି ପଳାଇ ଆସିଲେ । ସେ ଜଣେ ସାଧାରଣ ଗ୍ରାମୀଣ ନାରୀ ବେଶରେ ଶିଶୁ ପୁତ୍ରକୁ ଗୋଟିଏ ପାଛି-ଆରେ ମୁଣ୍ଡାଇ ବାଟ ବୁଲୁଥିଲେ ।





ଆଧୁନିକ ଅମ୍ବର ନିକଟବର୍ତ୍ତୀ ଗୋଟିଏ ସ୍ଥାନରେ ଆସି ପହଞ୍ଚିବା ବେଳକୁ ସେ ଅତ୍ୟନ୍ତ କ୍ଳାନ୍ତ ହୋଇ ପଡିଥିଲେ । ସେ ଖଣ୍ଡିଏ ପଥର ଉପରେ ପାଛିଆଟି ଥୋଇ କୋଳ ଡୋଳୁଥିଲେ । ସେ ପାଛିଆ ପାଖକୁ ଫେରିବା ବେଳକୁ ତା' ଉପରେ ଫଣା ତୋଳି ରହିଛି କଳ ନାଗଟିଏ । ସାପ ଅବଶ୍ୟ ଅପସରି ଗଲା ।

ଅଦୂରରୁ ସେ ଦୃଶ୍ୟ ଦେଖିଥିବା ଜଣେ ବ୍ରାହ୍ମଣ ସେ ରାଣୀଙ୍କୁ କହିଲେ କି ତାଙ୍କ ପୁଅ ଦିନେ ନା ଦିନେ ରାଜା ହେବ। ଅମ୍ବର ରାଜାଙ୍କ ରୋଷେଇ ଘରେ ସେ ରାଣୀଙ୍କୁ ଚାକିରି ମିଳିଲା। ତାଙ୍କ ରନ୍ଧା ଏତେ ସୁଆଦିଆ ହେଲା ଯେ ରାଜା ତାଙ୍କ ପରିଚୟ ପଚାରି ବୁଝିଲେ ଓ ତାଙ୍କୁ ଭଉଣୀ ଭଳି ଆଦର ଦେଖାଇଲେ।





ରାଜପରିବାରରେ ରାଜପୁତ୍ର ଭଳି ବଢ଼ିଲେ ସେ ଆଶ୍ରିତା ରାଣୀଙ୍କ ପୁତ୍ର। ଷଡ଼ଯନ୍ତ୍ର କରି ଏହି ତରୁଣ ଦିନେ ଆଶ୍ରୟଦାତା ବଂଶ ହାତରୁ ସିଂହାସନ ଛଡ଼ାଇ ନେଲେ। ତେବେ ମୀନ ବଂଶର ଅନ୍ୟମାନେ କେତେବର୍ଷ ପରେ ତାଙ୍କୁ ହତ୍ୟା କଲେ। ଏହା ପରେ କେତେ ରାଜା ଅମ୍ବର ସିଂହାସନରେ ବସିଲେ। ଦୁର୍ଗର ଆୟତନ ମଧ୍ୟ ବଢ଼ି ଚାଲିଥାଏ।

ରାଜା ଦ୍ୱିତୀୟ ଜୟସିଂହ (୧୬୯୯-୧୭୪୩) ଅମ୍ବରରୁ ରାଜଧାନୀ ଜୟପୁରକୁ ସ୍ଥାନାନ୍ତର କଲେ। ଥରେ ମୋଗଲ ବାଦଶାହ ଶାହାଆଲମ ଅମ୍ବର ଅଧିକାର କରିବାକୁ ଚେଷ୍ଟା କରିଥିଲେ। କିନ୍ତୁ ରାଜା ଜୟସିଂହ ତାଙ୍କୁ ଘଉଡ଼ାଇ ଦେଲେ।






ଅମ୍ବର ଦୁର୍ଗ ମଧ୍ୟଯୁଗୀୟ ଭାରତୀୟ ସ୍ଥାପତ୍ୟର ଗୋଟିଏ ବିଶେଷ ନିଦର୍ଶନ । ଏହା ଯେଉଁ ପାହାଡ଼ ଉପରେ ଅବସ୍ଥିତ, ତା'ର ନାମ ଜୟଗଡ଼ । ଦୁର୍ଗର ବହୁ ଦର୍ଶନୀୟ ଅଂଶ ଭିତରେ ଗୋଟିଏ ହେଲା ସୂରଜପୋଲ—ଚାନ୍ଦପୋଲ ତୋରଣ । ଏହା ଚମତ୍କାର ଭାବରେ ସୂର୍ଯ୍ୟ କିରଣ ଓ ଚନ୍ଦ୍ର କିରଣକୁ ପ୍ରତିଫଳିତ କରେ ।

ରାଜା ପ୍ରଥମ ଜୟସିଂହଙ୍କ ନିର୍ମିତ ଦିୱାନ୍-ଇ ଆମ୍ ଗୋଟିଏ ସୁଦୃଶ୍ୟ ଇମାରତ୍ । ଏହାର ଶଙ୍ଖମଲମଲ ସ୍ତମ୍ଭମାନ ଅତ୍ୟନ୍ତ ମନୋରମ । ମୋଗଲ ସମ୍ରାଟ ଆଓରଙ୍ଗଜେବ୍ ଏହାକୁ ଦେଖି ଭୀଷଣ ଈର୍ଷ୍ୟା-କାତର ହୋଇଥିଲେ । ଆଜି ଅବଶ୍ୟ ଏଠାରେ ଦରବାର ବିଧାନ କିଛି ହୁଏ ନାହିଁ ।





ଅମ୍ବର ଦୁର୍ଗର ଇତିହାସ ଲେଖିବାକୁ ହେଲେ ବିରାଟ ଗ୍ରନ୍ଥର ଆବଶ୍ୟକ ପଡ଼ିବ । ଆଜି ଏ ଦୁର୍ଗ ଦେଖିବାକୁ ପ୍ରତ୍ୟହ ଶହ ଶହ ଲୋକ ଦୂର-ଦୂରାନ୍ତରରୁ ଆସନ୍ତି । ଦୁର୍ଗ ପ୍ରାଙ୍ଗଣରେ ଚଢ଼ିବା ପାଇଁ ହାତୀ ମହଜୁଦ୍ ଅଛନ୍ତି । ଭାରତର ଦୁର୍ଗମାନଙ୍କ ଭିତରେ ଅମ୍ବରର ଏକ ବିଶେଷ ସ୍ଥାନ ଅଛି ।



# ଯୋଗାଯୋଗ

ନରୱେ ଦେଶର ବାଲଜାକ୍ ସହରରେ ଜଣେ ଥିଲାବାଲା ଲୋକ ରହୁଥିଲେ । ତାଙ୍କର ଜମିଜମା ବହୁତ ଥିଲା । ସର୍ବୋପରି ଥିଲା ଗୋଟିଏ ଛୋଟ ଦ୍ୱୀପ ଉପରେ ମାଲିକାନା । ଦ୍ୱୀପଟିରେ ନୌକାରେ ଯାଇ ପହଞ୍ଚିବାକୁ ହୁଏ । ବର୍ଷକର ଗୋଟିଏ ନିର୍ଦ୍ଦିଷ୍ଟ ସମୟରେ ସେ ଦ୍ୱୀପ ଚାରିକଡ଼େ ପ୍ରଚୁର ମାଛ ମିଳନ୍ତି । ଭଦ୍ରଲୋକଙ୍କର ଦୁଇ ପୁଅ ଜେନ୍ ଓ ଡେନ୍ ଯାଇ ସେ ଦ୍ୱୀପରେ ଦୁଇ ଚାରିଦିନ ରହି ପ୍ରଚୁର ମାଛ ଧରନ୍ତି ଓ ସେସବୁ ଶୁଖାଇ ନୌକାରେ ବୋଝେଇ କରି ଘରକୁ ନେଇ ଆସନ୍ତି ।

"ମନେ ରଖ, କେବେ ହେଲେ ବର୍ଷା-ବେଳେ ଦ୍ୱୀପକୁ ଯିବ ନାହିଁ । ସେତେବେଳେ ଅନ୍ୟ ଦ୍ୱୀପର ବଣ ଭିତରୁ ଦଳେ ବାମନ ଆସି ଆମ ଦ୍ୱୀପରେ ପହଞ୍ଚନ୍ତି । ସମ୍ଭବତଃ ସେମାନେ ଭୀଷଣ ପ୍ରକୃତିର ।" ଭଦ୍ରଲୋକ ତାଙ୍କ ଦୁଇ ପୁଅକୁ ବାରମ୍ବାର ଏ ଚେତାବନୀ ଦେଇ ରଖିଥାନ୍ତି ।

ଦିନେ ଭଦ୍ରଲୋକ ଅସୁସ୍ଥ ହୋଇ ପଡ଼ିଲେ ଓ କେଇଦିନ ପରେ ମୃତ୍ୟୁ ବରଣ କଲେ । ଜେନ୍ ଓ ଡେନ୍ ଯଥାବିଧି ତାଙ୍କର ସତ୍କାର କରିସାରିବା ପରେ ଦିନେ ଡଙ୍ଗା ଚଢ଼ି ସେ ଦ୍ୱୀପକୁ ଗଲେ । ତିନି ଚାରିଦିନ ରହି ମାଛ ଧରିଲେ ଓ ଦ୍ୱୀପରେ ଯାହା ଫଳ ମୂଳ ମିଳୁଥିଲା, ସେସବୁ ସଂଗ୍ରହ କଲେ ।

ଦିନେ ଡେନ୍ ଦ୍ୱୀପର ଗୋଟିଏ ପ୍ରାନ୍ତକୁ ଯାଇ ମାଛ ଧରୁଛି, ହଠାତ୍ କଳା ହାଣ୍ଡିଆ ମେଘ ଘୋଟି ଆସିଲା । ଜେନ୍ ତା' ସାନ ଭାଇର ନାମ ଧରି ଥରେ ଅଧେ ହୁରି ପକାଇଲା । କିନ୍ତୁ ପବନ ବିପରୀତ ଦିଗରେ ବହୁଥିବାରୁ ଏବଂ ଡେନ୍ ଦୂରରେ ଥିବାରୁ ତା'



ଡାକ ଶୁଣିପାରିଲା ନାହିଁ। ଜେନ୍ ଦେଖିଲା ବର୍ଷା ଆସିବା ଉପରେ। ବର୍ଷା ହେଲେ ସେ ବଣୁଆ ବାମନମାନେ ସେଠି ଆସି ପହଞ୍ଚିବେ— ସେହି ଡରରେ ସେ ଡଙ୍ଗାକୁ ଉଠିପଡି ଆହୁଲ ପକାଇ ଦ୍ୱୀପ ଛାଡି ପଳାଇଲା। ବାମନମାନେ ଯେ ଡେନ୍‌କୁ ମାରିପକାଇ ପାରନ୍ତି, ସେକଥା ଭାବିଲା ନାହିଁ।

ଘରେ ପହଞ୍ଚି ସେ ସେକଥା ଭାବିଲା ଓ ନିଜକୁ କହିଲା, "ମୋ ଭାଗ୍ୟ, ମୁଁ ବଞ୍ଚିଗଲି। ତା' ଭାଗ୍ୟ ସେ ମଲା। କାହାର କ'ଣ କରିବାର ଅଛି?"

ଏହାପରେ ସେ ନିଜ ଭାଇ ବିଷୟରେ ଥରେ ମଧ୍ୟ କୌଣସି ଚିନ୍ତା କଲା ନାହିଁ କି ତାଙ୍କୁ ଉଦ୍ଧାର କରିବା ପାଇଁ ଯିବାର ବ୍ୟବସ୍ଥା କଲା ନାହିଁ।

ଏଣେ ଡେନ୍ ବର୍ଷା ହେବାରୁ ଦ୍ୱୀପ ଭିତରେ ଥିବା ସେମାନଙ୍କ କୋଠି ଭିତରକୁ ପଳାଇ ଆସି ଦେଖେ ତ ଜେନ୍ ନାହିଁ। ବର୍ଷା ଛାଡିଯିବା ମାତ୍ରେ ସେ ବାହାରକୁ ଯାଇ ଜେନ୍‌କୁ ଖୋଜିଲା, କିନ୍ତୁ ପାଇଲା ନାହିଁ। ସେ ଯେତେବେଳେ ବହୁତ ଡକାଡକି କରି ତାଠୁଁ ଉତ୍ତର ପାଇଲା ନାହିଁ, ସେତେବେଳେ ସମୁଦ୍ର କୂଳକୁ ଯାଇ ଦେଖେ ତ ସେମାନଙ୍କ ଡଙ୍ଗା ଖଣ୍ଡିକ ମଧ୍ୟ ନାହିଁ।

ଜେନ୍ ଡଙ୍ଗାନେଇ କାହିଁକି କୁଆଡ଼େ ପଳାଇଗଲା ସେ ବୁଝିପାରିଲା ନାହିଁ। ହୁଏତ ସେ ଫେରି ଆସିବ, ଏହି ଆଶାରେ ସେ ବାଟ ଚାହିଁ ରହିଲା। ଦିନ ପରେ ଦିନ ଏମିତି ସାତ ଦିନ ବିତିଗଲା। ତା'ପରେ ଆରମ୍ଭ ହୋଇଗଲା ବର୍ଷା ଋତୁ।

ଦିନେ ସେ ତା' କୋଠିର ଉପର ମହଲରେ ବସି ବାହାରେ ହେଉଥିବା ବର୍ଷା ଆଡ଼େ ଅନାଇ ରହିଛି, ଦୂରରୁ ଦଳେ ବାମନ ମାଡ଼ି ଆସୁଥିବାର ଦେଖିଲା। ଏହିମାନେ ତେବେ ବର୍ଷା କାଳରେ ଏ ଦ୍ୱୀପକୁ ଆସନ୍ତି! ଏମାନେ ହିଂସ୍ର ହୋଇଥିବେ ବୋଲି ବାହାର ଲୋକଙ୍କର ବିଶ୍ୱାସ ଥିଲା ଓ ଡେନ୍ ମଧ୍ୟ ବାରମ୍ବାର ସେକଥା ଶୁଣିଥିଲା। ସେ ଡରିଯାଇ ଘରର ଛାତକୁ ଲାଗି ରହିଥିବା ଗୋଟିଏ କାଠ ଭାଡ଼ ଉପରେ ଲୁଚି ବସିଲା।



ବାମନମାନେ ସେ କୋଠି ଭିତରକୁ ପଶି ଆସିଲେ । ସମସ୍ତେ ତ ବାମନ । କିନ୍ତୁ ଇଏ କ'ଣ ? ସେମାନଙ୍କ ସହିତ ଥିଲା ଜଣେ ସୁନ୍ଦରୀ ତରୁଣୀ । ସିଏ ସାଧାରଣ ଆକାରର ମଣିଷ ।

ବାମନ ସର୍ଦ୍ଦାର ସେ ତରୁଣୀକୁ କହିଲା, "ତମର ମନ ବଦଳିଗଲାଣିଟି ? ଏଥର ଆମେ ବାହା ହେବାଟି ?"

ତରୁଣୀ ବିରକ୍ତ ହୋଇ କହିଲା, "ଦେଖ, ପ୍ରତି ବର୍ଷ ବର୍ଷା ଋତୁରେ ମୋତେ ଏକଥା କହିବାର ଅର୍ଥ କ'ଣ ? ମୁଁ କଦାପି ତମକୁ ବାହା ହେବ ନାହିଁ । ଏକଥା ଆଉ କେତେ-ଥର କହିବ ?"

"ହଉ । ଯଦି ସତରେ ବାହା ନ ହେବ, ତେବେ ମିଛରେ ବାହାଘର ଖେଳ ଖେଳିବା ଚାଲ । ତମେ କନିଆ ଆଉ ମୁଁ ବର ।" ବାମନ ସର୍ଦ୍ଦାର କହିଲା ।

"ନା, ମୋର ସେଭଳି ଖେଳ ଖେଳିବାକୁ ମନ ନାହିଁ ।" ତରୁଣୀ ଉତ୍ତର ଦେଲା ।

ବାମନ ସର୍ଦ୍ଦାର ରାଗିଗଲା । "ଏ ଘରେ ତେଲ ପକାଇ ନିଆଁ ଲଗାଇ ଦେବ !" ସେ କହିଲା । ସେତିକି ନୁହେଁ । ସେ ତା' ଲୋକଙ୍କୁ ନିଆଁ ଆଣିବାକୁ ହୁକୁମ୍ ଦେଲା ।

ଡେନ୍ ଦେଖିଲା ଆଉ ବିଳମ୍ବ କଲେ ବିପଦ । ତା' ହାତରେ ବନ୍ଧୁକ ଥିଲା । ସେ ଗୋଟିଏ ଗୁଳି ଫୁଟାଇଦେଲା—ଅବଶ୍ୟ କାହାକୁ ଲକ୍ଷ୍ୟ କରି ନୁହେଁ । ତା'ପରେ ଘଡ଼ିରୁ ଚଟାଣ ଉପରକୁ ଡେଇଁ ପଡ଼ିଲା ।

ବାମନମାନେ ଚିତ୍କାର କରି ପଳାଇଲେ । ତରୁଣୀ ଆଶ୍ଚର୍ଯ୍ୟ ହୋଇ ଡେନ୍‌କୁ ପଚାରିଲା, "ତମେ କିଏ ?"

ଡେନ୍ ତା' କଥା ଗପିଲା । ତରୁଣୀ ବି ତା' କଥା ଗପିଲା । ସେ ସାନ ହୋଇଥିବା ବେଳେ ଏ ଦ୍ୱୀପର ଜାତିର ଜୀବମାନେ ତାକୁ ଚୋରାଇ ଆଣିଥିଲେ । ବାମନ ସର୍ଦ୍ଦାର ତାକୁ ବହୁତ କଲବଲ କଲାଣି ।

ଡେନ୍ ଝରକା ଦେଇ ଅନାଇ ଦେଖିଲା, ବାମନମାନେ ପହଁରି ପହଁରି ପଳାଉଛନ୍ତି । ତରୁଣୀକୁ ସେମାନେ ଯେଉଁ ନୌକାରେ

ଆସିଥିଲେ, ସେ ନୌକା ସେମିତ ବନ୍ଧା ହୋଇଛି ।

ଡେନ୍ ତରୁଣୀକୁ ଧରି ସେ ନୌକାରେ ବସି ତରୁଣୀର ଘର ଯେଉଁ ସହରରେ ସେ ସହରକୁ ଫେରିଗଲା । ତରୁଣର ଧନୀ ବାପା ମା' ଝିଅକୁ ଫେରି ପାଇ ଏଡ଼େ ଖୁସି ହେଲେ ଯେ ଡେନ୍‌କୁ ସେମାନେ ଛାଡ଼ିଲେ ନାହିଁ । ସେମାନଙ୍କର ଆଉ କେହି ନଥିଲେ । ଡେନ୍ ସେ ଝିଅକୁ ବାହା ହେଲା ।

ଡେନ୍ ବର୍ଷକ ପରେ ଦିନେ ବୀଲ୍ ଜାକ୍ ସହରକୁ ଯାଇ ତା' ଭାଇ ଜେନ୍‌କୁ ଦେଖାକଲା । ଜେନ୍ ଭାବିଥିବା ଡେନ୍‌କୁ ବାମନମାନେ ମାରି ପକାଇଥିବେ । ବର୍ତ୍ତମାନ ତା'କୁ ସୁସ୍ଥ ସବଳ ତଥା ଉତ୍ତମ ବସ୍ତ୍ର ପରିଧାନ କରିଥିବାର ଦେଖି ସେ ପଚାରିଲା, "ଏହା କିପରି ହେଲା ?"

"ଭାଇ, ବାମନମାନଙ୍କ ଦୟାରୁ !" ଡେନ୍ କହିଲା ।

ଜେନ୍ ଚୁପ୍ ରହିଲା । ପରଦିନ ସେ ମଧ୍ୟ ବାମନମାନଙ୍କ ଦୟା ପାଇବା ନିମନ୍ତେ ସେ ଦ୍ୱୀପରେ ଯାଇ ପହଞ୍ଚିଲା । ସେତେବେଳକୁ ବର୍ଷା ଆସୁଥାଏ । ସେ କୋଠି ଭିତରେ ବସିଛି, ବାମନମାନେ ପହଞ୍ଚିଗଲେ । ସେମାନେ ଦୂରରୁ ଜେନ୍ ଆସିବାର ଦେଖିଥିଲେ ଓ ତାକୁ ଡେନ୍ ବୋଲି ଧରି ନେଇଥିଲେ । ତେଣୁ ଧିରେ ଧିରେ ଘରର କବାଟ ବାହାରୁ ବନ୍ଦ କରିଦେଇ ସେମାନେ ଘରେ ନିଆଁ ଲଗାଇ ଦେଲେ ! ତା'ପରେ ବାହାରେ ଅଟ୍ଟହାସ୍ୟ କଲେ । ଅଳ୍ପ ସମୟ ଭିତରେ ନିଆଁ ଦାଉ ଦାଉ ଜଳି ଉଠିଲା ।

ଜେନ୍ ଯେତେବେଳେ ନିଜର ଦୁରବସ୍ଥା ବୁଝିଲା, ସେତେବେଳେ କୌଣସି ମତେ ଝରକା ଦେଇ ଖଣ୍ଡିଆ ଖାବରା ହୋଇ ବାହାରକୁ ପଳାଇ ଆସିଲା ସିନା, କିନ୍ତୁ ସେ ଦୁର୍ଦଶା ସେ ପାଶୋରି ପାରିଲା ନାହିଁ । ସେ ପ୍ରାୟ ପାଗଳ ହୋଇଗଲା ।





# ଉତ୍ତର ରାମାୟଣ

ଶ୍ରୀରାମ ଶମ୍ବୁକଙ୍କୁ ବଧ କରିସାରି ଅଯୋଧ୍ୟା ଫେରି ଆସିଲେ । ବ୍ରାହ୍ମଣପୁତ୍ର ପୁନର୍ଜୀବିତ ହୋଇ ଉଠିଲା । କିଛିଦିନ ପରେ ଦିନେ ଶ୍ରୀରାମ ଦୁଇ ଅନୁଜ ଭରତ ଓ ଲକ୍ଷ୍ମଣଙ୍କୁ ଡାକି କହିଲେ, "ବହୁଦିନରୁ ମୋ ମନ ଭିତରେ ଏକ ଆକାଂକ୍ଷା ଅଛି; ତାହା ହେଲା ରାଜସୂୟ ଯଜ୍ଞ କରିବାର ଇଚ୍ଛା । ଏ ଯଜ୍ଞ କଲେ ରାଜା, ପ୍ରଜା ଓ ରାଜ୍ୟର ସବୁଦିଗରୁ ମଙ୍ଗଳ ହୁଏ । ତୁମମାନଙ୍କର ମତ କ'ଣ ?"

"ରାଜୁଦେବ, ଆପଣଙ୍କ ମଧ୍ୟରେ ଧର୍ମ ନିଜେ ସର୍ବଦା ଆଶ୍ରୟ ନେଇ ରହିଛି । ପୃଥିବୀ ଆପଣଙ୍କ ଯଶ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ବ୍ୟାପୀ ରହିଅଛି । ଯଦି ପୃଥିବୀ ଅଧିକ ଧର୍ମ ପାଇଁ ରାଜସୂୟ ଯଜ୍ଞ କରିବେ ତେବେ ଅନେକ ରାଜା ନିଜର ପୌରୁଷ ଦେଖାଇବାକୁ ଯାଇ ଯୁଦ୍ଧ କରିବେ ଓ ଅଯଥା ରକ୍ତପାତ ହେବ । ରାଜ୍ୟରେ ଅଶାନ୍ତି ବ୍ୟାପିବ । ତେଣୁ ମୋର ପ୍ରାର୍ଥନା ସେସବୁ ନ କଲେ ଭଲ ।" ଭରତ କହିଲେ ।

ତା'ପରେ ଲକ୍ଷ୍ମଣ କହିଲେ, "ରଘୁବର, ସମସ୍ତ ପାପକୁ ପ୍ରକ୍ଷାଳନ କରିପାରେ କେବଳ ଅଶ୍ୱମେଧ ମହାଯଜ୍ଞ । ଏ ଯଜ୍ଞର ବହୁତ ଖ୍ୟାତି ଅଛି । କେବଳ ଆପଣଙ୍କ ପରି ରାଜା ଏହାକୁ କରିପାରିବାକୁ ସମର୍ଥ । ଏହା ଫଳରେ ମହାନ୍ ପୁଣ୍ୟ ମିଳେ । ପ୍ରାଚୀନ କାଳରେ ଥରେ ଇନ୍ଦ୍ର ମହାପାପରେ ଭାଗୀ ହୋଇ ବୃହସ୍ପତିଙ୍କ ସହାୟତାରେ ଏହି ଯଜ୍ଞ କରି ପାପମୁକ୍ତ ହୋଇଥିଲେ ।"

**୧୨. ଅଶ୍ୱମେଧଯଜ୍ଞ**



ଥରେ ବୃତ୍ରର ଇଚ୍ଛା ହେଲା ତପସ୍ୟା କରିବା ପାଇଁ । ସେ ଜ୍ୟେଷ୍ଠ ପୁତ୍ରକୁ ରାଜ୍ୟ ଦେଇ ନିଜେ ବଣକୁ ଚାଲିଗଲା । ତା'ର ଘୋର ତପସ୍ୟା ଦେଖି ଇନ୍ଦ୍ର ଭୟଭୀତ ହୋଇ ଶ୍ରୀବିଷ୍ଣୁଙ୍କ ପାଖକୁ ଯାଇ କହିଲେ, "ପ୍ରଭୁ, ଥରେ ବୃତ୍ର ତପସ୍ୟା କରି ତିନିଲୋକ ଉପରେ ଅଧିକାର କରି ବସିଛି । ଏଥର ଯଦି ସେ ତପସ୍ୟାରେ ସଫଳ ହୁଏ ତେବେ ଦେବତା-ମାନଙ୍କର, ବିଶେଷତଃ ମୋର ଅବସ୍ଥା କ'ଣ ହେବ ? ଯାହାହେଲେ ମଧ୍ୟ ସେ ଦୈତ୍ୟ-କୁଳରେ ଜନ୍ମ ନେଇଛି । ତା' ଉପରେ କୌଣସି ବିଶ୍ୱାସ ନାହିଁ । ଆପଣ ତାକୁ ସଂହାର କରି ଆମକୁ ରକ୍ଷା କରନ୍ତୁ ।"

ରାମ ଇନ୍ଦ୍ରଙ୍କ ଯଜ୍ଞ ବିଷୟରେ ଅଧିକ ଜାଣିବାକୁ ଆଗ୍ରହ ପ୍ରକାଶ କରନ୍ତେ ଲକ୍ଷ୍ମଣ କାହାଣୀଟି କହିଲେ ।

"ପ୍ରାଚୀନ କାଳରେ ବୃତ୍ର ନାମକ ଏକ ମହାସୁର ଥିଲା । ସେ ଥିଲା ଅତ୍ୟନ୍ତ ଜ୍ଞାନୀ ଓ ଧର୍ମାତ୍ମା । ସେ ତିନିଲୋକର ବାସିନ୍ଦାଙ୍କ ପ୍ରତି ସମାନ ଭାବରେ ବ୍ୟବହାର କରୁଥିଲା । ତା'ର ଶାସନ କାଳରେ ସମୟ ଅନୁସାରେ ବର୍ଷା ମଧ୍ୟ ହେଉଥିଲା । ସୁନ୍ଦର ଫସଲ ହେଉଥିଲା । ପାପ ଅନାଚାର ଆଦୌ ନ ଥିଲା । ଧନ ଧାନ୍ୟରେ ପୂର୍ଣ୍ଣ ତା'ର ରାଜ୍ୟର ପ୍ରଜାଗଣ ଅତି ଆନନ୍ଦରେ କାଳାତିପାତ କରୁଥିଲେ ।

ଦେବରାଜ ଇନ୍ଦ୍ରଙ୍କର ଏହି ପ୍ରାର୍ଥନା ଶୁଣି ଭଗବାନ୍ ବିଷ୍ଣୁ କହିଲେ, "ଦେବରାଜ, ମହାତ୍ମା ବୃତ୍ର ହେଉଛି ମୋର ମିତ୍ର; ତେଣୁ ମୁଁ ତାକୁ ସଂହାର କରିପାରିବି ନାହିଁ । ପୁଣି ତୁମ ପ୍ରାର୍ଥନାର ମଧ୍ୟ ମୂଲ୍ୟ ଦେବାକୁ ହେବ । ତେଣୁ ମୁଁ ତୁମ ଇଚ୍ଛା ପୂରଣ ପାଇଁ ଏକ ଉପାୟ କରୁଛି । ମୁଁ ମୋର ଶକ୍ତିକୁ ତିନି ଭାଗରେ ବିଭକ୍ତ କରିବି । ଗୋଟିଏ ଅଂଶ ତୁମ ମଧ୍ୟରେ ରହିବ । ଦ୍ୱିତୀୟଟି ତୁମ ବଜ୍ରାୟୁଧ ମଧ୍ୟରେ ରହିବ । ତୃତୀୟ ଅଂଶଟି ପୃଥିବୀ ମଧ୍ୟରେ ରହିବ । ତେବେ ତୁମେ ନିଜେହିଁ ସହଜରେ ତୁମ ବଜ୍ରାୟୁଧ ଦ୍ୱାରା ବୃତ୍ରକୁ ବିନାଶ କରିପାରିବ ।



ସେହିପରି ହେଲା । ଇନ୍ଦ୍ର ଶକ୍ତିଶାଳୀ ହୋଇ ଦେବତାମାନଙ୍କୁ ସାଥିରେ ଧରି ବୃତ୍ର ତପସ୍ୟା କରୁଥିବା ବନକୁ ଗଲେ । ତପସ୍ୟା ଶକ୍ତିରେ ବୃତ୍ରଙ୍କ ଶରୀର ଥିଲା ଜାଜ୍ଜ୍ୱଲ୍ୟମାନ । ମନେ ହେଉଥିଲା ସେ ତା'ର ତପସ୍ୟାଗ୍ନିରେ ତିନିଲୋକକୁ ଦଗ୍ଧ କରିପାରେ । ଇନ୍ଦ୍ର ମନେ ମନେ ସାହସ ସଞ୍ଚୟ କରି ବୃତ୍ରକୁ ମାରିବାର ସଂକଳ୍ପ କରି ଶ୍ରୀବିଷ୍ଣୁଙ୍କୁ ସ୍ମରଣ ପୂର୍ବକ ହାତରେ ବଜ୍ର ଦୃଢ଼ ଭାବରେ ଧରିଲେ ତା'ପରେ ବୃତ୍ରର ଶିରଚ୍ଛେଦ କଲେ ।

ସେହି ମୁହୂର୍ତ୍ତରେହିଁ ବ୍ରହ୍ମହତ୍ୟାର ପାପ ଇନ୍ଦ୍ରଙ୍କ ଶରୀର ଗ୍ରାସ କଲା । ସେ ସେହି-ଠାରେହିଁ ଶକ୍ତିହୀନ ଓ ନିଶ୍ଚଳ ହୋଇ ପଡ଼ି ରହିଲେ । ଦେବତାମାନେ ଇନ୍ଦ୍ରଙ୍କର ଏଭଳି ଅବସ୍ଥା ଦେଖି ପୁଣି ଶ୍ରୀବିଷ୍ଣୁଙ୍କ ପାଖକୁ ଯାଇ କହିଲେ, "ଭଗବାନ୍, ବୃତ୍ରକୁ ବଧ କରିବା ପରେ ବ୍ରହ୍ମହତ୍ୟାଜନିତ ପାପ ଯୋଗୁଁ ଇନ୍ଦ୍ର ଚଳତ୍‌ଶକ୍ତିରହିତ ହୋଇ ପଡ଼ି ରହିଛନ୍ତି । ଏହି ପାପରୁ ଉଦ୍ଧାର ପାଇବାର ଉପାୟ କୁହନ୍ତୁ ।"

ଶ୍ରୀବିଷ୍ଣୁ ଉତ୍ତରରେ କହିଲେ, "ଯଦି ଇନ୍ଦ୍ର ଅଶ୍ୱମେଧ ଯଜ୍ଞ କରନ୍ତି ତେବେ ସେହି ପାପରୁ ମୁକ୍ତ ହୋଇ ପାରିବେ ।"

ଶ୍ରୀବିଷ୍ଣୁଙ୍କର ଏହି ଉପଦେଶକୁ ଗ୍ରହଣ କରି ଦେବଗଣ ଇନ୍ଦ୍ରଙ୍କ ନିକଟକୁ ଗଲେ । ଦେବଗୁରୁ ବୃହସ୍ପତି ଓ ଅନ୍ୟାନ୍ୟ ଋଷିମୁନିଙ୍କ ସହାୟତାରେ ଅଶ୍ୱମେଧ ଯଜ୍ଞ କରାଗଲା ଓ ଇନ୍ଦ୍ର ଅବଶେଷରେ ସେହି ବ୍ରହ୍ମହତ୍ୟା ପାପରୁ ମୁକ୍ତ ହେଲେ ।"

ଲକ୍ଷ୍ମଣଙ୍କର ଏହି ଗଳ୍ପ ଶେଷ ହେବା ଉତ୍ତାରୁ ସ୍ୱୟଂ ଶ୍ରୀରାମ ମଧ୍ୟ ଅଶ୍ୱମେଧ ଯଜ୍ଞର ଫଳ ବିଷୟରେ ଏକ କାହାଣୀ ଶୁଣାଇଲେ ।

ବହୁବର୍ଷ ପୂର୍ବେ, କର୍ଦ୍ଦମ ପ୍ରଜାପତିଙ୍କ ପୁତ୍ର ଇଲ ବାହ୍ଲିକ ଦେଶରେ ରାଜତ୍ୱ କରୁଥା'ନ୍ତି । ସେ ଥିଲେ ବୀର, ପରାକ୍ରମୀ, ତେଜସ୍ୱୀ ଓ ଧର୍ମନିଷ୍ଠ । ଦେବତା, ରାକ୍ଷସ, ନାଗ, ଯକ୍ଷ, ତଥା ଗନ୍ଧର୍ବମାନେ ମଧ୍ୟ ତାଙ୍କ ସହିତ ଆଦରଭାବ ରଖୁଥିଲେ ।

ଥରେ ଚୈତ୍ର ମାସରେ ମହାରାଜ ଇଲ ନିଜର ଅମାତ୍ୟବର୍ଗ ଓ ପରିବାରବର୍ଗଙ୍କୁ



ନେଇ ଜଙ୍ଗଲରେ ଶିକାର କରିବାକୁ ଗଲେ । ବନ ମଧ୍ୟରେ ତମ୍ବୁ ପକାଇ ଅନେକ ଦିନ ଧରି ଶିକାର କରିଲେ ମଧ୍ୟ ତାଙ୍କର ସେଥିରେ ତୃପ୍ତି ଆସିଲା ନାହିଁ । ହଜାର ହଜାର ପଶୁପକ୍ଷୀ ବଧ କଲେ, ତଥାପି ରାଜଧାନୀ ଫେରିବାର ନାମ ଧରୁ ନଥା'ନ୍ତି ।

ଦିନେ ଶିକାର କରୁ କରୁ ଗହନ ବନ ମଧ୍ୟରେ ଗୋଟିଏ ପଶୁର ଅନୁସରଣ କରି ସେ ଯାଇ ପହଞ୍ଚିଲେ ଶିବପାର୍ବତୀ ରହୁଥିବା ଜଙ୍ଗଲରେ । ତାଙ୍କ ସହିତ ଅଳ୍ପ କେତେକ ଅନୁଚର ମଧ୍ୟ ଥା'ନ୍ତି । କିନ୍ତୁ ଉକ୍ତ ବନର ଏପରି ପ୍ରଭାବ ପୂର୍ବରୁ ଥାଏ ଯେ ସେଠାରେ ପ୍ରବେଶ କରିବା ମାତ୍ରେ ପୁରୁଷ ମଧ୍ୟ ସ୍ତ୍ରୀ ହୋଇଯିବ । ସେଠାରେ ପୁରୁଷ ରହିପାରିବ ନାହିଁ । ଏମାନଙ୍କର ମଧ୍ୟ ସେହି ଦଶା ହେଲା । ଏପରି ଅଗୃନଙ୍କ ପରିବର୍ତ୍ତନ ଦେଖି ରାଜା, ବ୍ୟଥିତ ଓ ଭୟଭୀତ ହୋଇ ପଡ଼ିଲେ । ସେ ଓ ତାଙ୍କର ଅନୁଚରମାନେ ଯାଇ ଶିବଙ୍କ ପାଖରେ ପହଞ୍ଚିଲେ ଓ ପୂର୍ବରୂପ ଫେରି ପାଇବାକୁ ପ୍ରାର୍ଥନା କଲେ ।

"ତୁମେମାନେ ସ୍ତ୍ରୀ ରୂପ ଦୂର କରିବା ବ୍ୟତୀତ ଅନ୍ୟ ଯାହା ପ୍ରାର୍ଥନା କରିପାର ।" ଭଗବାନ୍ ଶିବ କହିଲେ ।

ରାଜା ଇଲ ଭଗବାନ୍ ଶିବଙ୍କୁ ଆଉ କିଛି ବର ମାଗିଲେ ନାହିଁ, ତା'ପରେ ଦେବୀ ପାର୍ବତୀଙ୍କୁ ଅତି ବିନୀତ ହୋଇ ପ୍ରାର୍ଥନା କଲେ ତାଙ୍କୁ ଏ ବିପଦରୁ ରକ୍ଷା କରିବାକୁ । ତାଙ୍କ ପ୍ରାର୍ଥନାରେ ଦେବୀ ଦୟାକରି ତାଙ୍କୁ ଏକ ବର ଦେଲେ ଯାହାର ପ୍ରଭାବରେ ସେ ଏକମାସ ସ୍ତ୍ରୀ ଓ ଏକମାସ ପୁରୁଷ ହୋଇ ରହିବେ । କିନ୍ତୁ ସ୍ତ୍ରୀ ସମୟର ଅଭିଜ୍ଞତା ପୁରୁଷ ହେବାବେଳେ ଭୁଲିଯିବେ ଓ ପୁରୁଷ ସମୟର ଅଭିଜ୍ଞତା ସ୍ତ୍ରୀ ହେବାବେଳେ ଭୁଲିଯିବେ ।

ସେହି ଦିନଠାରୁ ରାଜା "ଇଲା" ନାମ ଧରି ସ୍ତ୍ରୀ ରୂପରେ ତାଙ୍କର ଅନୁଚରବର୍ଗଙ୍କ ସହ ବନ ମଧ୍ୟରେ ବିଚରଣ କଲେ । ଅନୁଚରବର୍ଗ ମଧ୍ୟ ସ୍ତ୍ରୀ ରୂପ ପ୍ରାପ୍ତ ହୋଇଥା'ନ୍ତି । ନିକଟସ୍ଥ ବନ ପ୍ରଦେଶରେ ଏକ ସୁନ୍ଦର ସରୋବର ଥିଲା । ତା'ର ନିକଟରେ ଚନ୍ଦ୍ରଙ୍କ



ପୁତ୍ର ବୁଧ ଏକ ସୁନ୍ଦର ଆଶ୍ରମ କରି, ସେଠାରେ ରହି ତପସ୍ୟା କରୁଥା'ନ୍ତି । ତାଙ୍କର ଥିଲା ଯୌବନାବସ୍ଥା । ସେ ଥିଲେ ଅତ୍ୟନ୍ତ ସୁନ୍ଦର ।

ଇଲ ଓ ତାଙ୍କ ସହିତ ଥିବା ସ୍ତ୍ରୀମାନେ ଉକ୍ତ ସରୋବରରେ ସ୍ନାନ କରୁଥା'ନ୍ତି ଓ ଖୁବ୍ ଆନନ୍ଦ କରୁଥା'ନ୍ତି । ବୁଧ ଦୂରରୁ ଏହି ସ୍ତ୍ରୀମାନଙ୍କୁ ଦେଖି ଆଶ୍ଚର୍ଯ୍ୟ ହେଲେ । ବିଶେଷତଃ "ଇଲ"ଙ୍କୁ ଦେଖି ଭାବିଲେ, "ଏପରି ସୁନ୍ଦରୀ ସ୍ତ୍ରୀ କ'ଣ ପୃଥିବୀ ଉପରେ ସମ୍ଭବ ?" ତା'ପରେ ସେହି ପରିଚାରିକାମାନଙ୍କ ମଧ୍ୟରୁ ଜଣକୁ ଡାକି ପଚାରିଲେ, "ତୁମେମାନେ କିଏ ?"

ସେ କହିଲା, "ତପସ୍ୱୀ ଶ୍ରେଷ୍ଠ, ସେହି ସୁନ୍ଦରୀ ଶ୍ରେଷ୍ଠା ଯୁବତୀ ହେଉଛନ୍ତି ଆମର ନେତ୍ରୀ । ଆମେ ଏଠାରେ ସୁନ୍ଦର ସରୋବର ଦେଖି ଜଳକେଳି କରୁଥିଲୁ । ଏତିକି ଯାହା କହିଲି; ଆଉ ଅଧିକା ମୁଁ କିଛି କହି ପାରୁନାହିଁ ।"

"ଠିକ୍ ଅଛି । ମୋ ଆଶ୍ରମରେ ସମସ୍ତ ପ୍ରକାର ସୁବନ୍ଦୋବସ୍ତ ଅଛି । ସମସ୍ତେ ଏଇଠାରେ ଆସି ରହିପାର ।" ବୁଧ କହିଲେ ।

ତା'ପରେ "ଇଲ"ଙ୍କୁ ଦେଖି ବୁଧ କହିଲେ, "ମୁଁ ହେଉଛି ଚନ୍ଦ୍ରଙ୍କ ପୁତ୍ର ବୁଧ । ତମେ ମୋ ସହିତ ସ୍ନେହପୂର୍ଣ୍ଣ ବ୍ୟବହାର କରି ଏଠାରେ ବାସ କର ।"

"ଯାହା ତୁମର ଇଚ୍ଛା ।" ଇଲ କହିଲେ ।

ଇଲ ଓ ବୁଧ ବହୁତ ଖୁସିରେ ରହିଥା'ନ୍ତି । ଦିନେ ହଠାତ୍ ସକାଳେ ଇଲ ମହାରାଜ ଇଲରେ ପରିବର୍ତ୍ତନ ହୋଇଗଲେ । ତାଙ୍କର ଗତମାସର ସବୁ ଘଟଣା ବିସ୍ମରଣ ହୋଇଗଲା । ସେ ବିସ୍ମିତ ହୋଇ ବୁଧଙ୍କୁ ପଚାରିଲେ, "ମୁନିବର, ମୁଁ ମୋର ସୈନିକମାନଙ୍କ ସହ ଏହି ବଣକୁ ଶିକାର କରିବାକୁ ଆସିଥିଲି । ତା'ପରେ କ'ଣ ହେଲା ମୋର କିଛି ମନେ ପଡୁନାହିଁ । ଆଉ ମୁଁ ବା ଏଠାରେ ଏକାକୀ କିପରି ରହିଛି ?"

"ରାଜନ୍ । ପଥର ବର୍ଷା ହେବା ଯୋଗୁଁ ବୋଧହୁଏ ତୁମ ସୈନିକମାନେ ମରି ଯାଇଛନ୍ତି । ଯିଏ ବା ବଞ୍ଚିଥିବେ ସେମାନେ ରାଜଧାନୀକୁ ଫେରି ଯାଇଥିବେ । ତମେ ଏହି ଆଶ୍ରମରେ ରହିଛ । ତମେ କିଛି ଚିନ୍ତା



ନକର ଏହିଠାରେହିଁ ରହିଥାଅ ।" ବୁଧ କହିଲେ ।

ଅନୁଚରମାନଙ୍କୁ ହରାଇ ଇଲ ଅତ୍ୟନ୍ତ ଦୁଃଖିତ ହେଲେ । ସେ ବୁଧଙ୍କୁ କହିଲେ, "ଏବେ ମୋର ରାଜ୍ୟ ଚଳାଇବାର କୌଣସି ଲାଳସା ନାହିଁ । ଯଦି ଆପଣ ଅନୁମତି ଦେବେ ତେବେ ମୋର ଜ୍ୟେଷ୍ଠପୁତ୍ର ଶଶିବିନ୍ଦୁର ରାଜ୍ୟାଭିଷେକ କରାଇ ମୁଁ ଅଚିରେ ଏହି ଆଶ୍ରମକୁ ଲେଉଟି ଆସିବି ।"

"ରାଜନ୍, ଏପରି ବ୍ୟସ୍ତ ହେବାର କୌଣସି କାରଣ ନାହିଁ । ତମେ ଏହିଠାରେ ଅନ୍ତତଃ ବର୍ଷେ ପର୍ଯ୍ୟନ୍ତ ରୁହ । ତୁମର ଯେଉଁଥିରେ ଭଲ ହେବ ତା'ର ବ୍ୟବସ୍ଥା ମୁଁ କରିବି ।" ବୁଧ କହିଲେ ।

ରାଜା ଇଲ ବୁଧଙ୍କ କଥା ସ୍ୱୀକାର କରି ସେହି ଆଶ୍ରମରେହିଁ ଅବସ୍ଥାନ କଲେ । ସେଠାରେ ମାସେ ନାରୀ ରୂପରେ ଓ ମାସେ ପୁରୁଷ ରୂପରେ ସେ ରହୁଥା'ନ୍ତି । ନାରୀ ରୂପରେ ଥିବା ସମୟରେ ସେ ବୁଧଙ୍କ ଦ୍ୱାରା ଏକ ପୁତ୍ର ପ୍ରସବ କଲେ ।

ତା'ର କିଛିଦିନ ପରେ ବୁଧ ଅନେକ ଋଷିମୁନିଙ୍କୁ ଡ଼କାଇ ଇଲଙ୍କର ପୂର୍ବରୂପ ଫେରି ପାଇବା ପାଇଁ କିଛି ଉପାୟ କରିବାକୁ କହିଲେ । ଇତିମଧ୍ୟରେ ଇଲଙ୍କ ପିତା କର୍ଦ୍ଦମ ଓ ଅନ୍ୟ ଋଷିମାନେ ମଧ୍ୟ ଆସି ସେଠାରେ ପହଞ୍ଚିଲେ । ସମସ୍ତେ ଭିନ୍ନ ଭିନ୍ନ ଭାବରେ ପରାମର୍ଶ ଦେଲେ । କିନ୍ତୁ ଶେଷରେ ଅଶ୍ୱମେଧ ଯଜ୍ଞ କରିବାକୁ ସମସ୍ତେ ସ୍ୱୀକୃତ ହେଲେ । ତା'ପରେ ଅଶ୍ୱମେଧ ଯଜ୍ଞ କରାଗଲା । ଯଜ୍ଞ କୁଣ୍ଡରୁ ନିଜେ ଶିବ ଆବିର୍ଭୂତ ହୋଇ ଇଲଙ୍କୁ ବର ଦେଲେ । ସେ ପୂର୍ବରୂପ ଫେରି ପାଇଲେ ।

ବାହ୍ଲିକ ଦେଶରେ ଇଲଙ୍କ ଜ୍ୟେଷ୍ଠପୁତ୍ର ଶଶିବିନ୍ଦୁ ଶାସନ କରୁଥା'ନ୍ତି । ପ୍ରତିଷ୍ଠାନପୁର ନାମକ ଅନ୍ୟ ଏକ ରାଜ୍ୟରେ ମହାରାଜ ଇଲ ଶାସନ କଲେ । ତାଙ୍କର ଓ ବୁଧଙ୍କର ପୁତ୍ର ପୁରୁରବସ ପ୍ରାପ୍ତ ବୟସ୍କ ହୁଅନ୍ତେ, ସେହି ରାଜ୍ୟ ରାଜା ଇଲ ତାଙ୍କୁ ପ୍ରଦାନ କଲେ ।

ଶ୍ରୀରାମ ଏହି କାହାଣୀଟି ଶେଷ କରି ଭରତ ଓ ଲକ୍ଷ୍ମଣଙ୍କୁ କହିଲେ, "ଅଶ୍ୱମେଧ ଯଜ୍ଞ

ବିଷୟରେ କୁଳଗୁରୁ ବଶିଷ୍ଠ, ଜାବାଳି ଓ ବାମଦେବ ଇତ୍ୟାଦିଙ୍କ ସହିତ ସମସ୍ତ କଥା ପରାମର୍ଶ କରିବା ଉଚିତ୍ । ଏକଥା ଋଷିମୁନି-ମାନେ ଶୁଣି ଅତ୍ୟନ୍ତ ଆନନ୍ଦିତ ହେଲେ । ତା'ପରେ ରାଜକର୍ମଚାରୀମାନେ ଯଜ୍ଞ ପାଇଁ ସମସ୍ତ ସାମଗ୍ରୀ ଏକତ୍ର କରିବାରେ ଲାଗିଲେ ।

ଲକ୍ଷ୍ମଣ ସମସ୍ତ ରାଜ୍ୟକୁ ଦୂତ ପଠାଇ ରାଜାମାନଙ୍କୁ ନିମନ୍ତ୍ରଣ କଲେ । ସୁଗ୍ରୀବ, ବିଭୀଷଣ ଓ ଶବରରାଜ ପ୍ରଭୃତି ମଧ୍ୟ ସପରିବାରେ ଆସିଲେ । ଅନେକ ଋଷି ମୁନିଙ୍କୁ ନିମନ୍ତ୍ରିତ କରାଗଲା । ଏତଦ୍‌ବ୍ୟତୀତ ଅନେକ ସୁପ୍ରତିଷ୍ଠିତ ନାଗରିକ, ଗାୟକ, ନର୍ତ୍ତକ ଆଦିଙ୍କୁ ମଧ୍ୟ ନିମନ୍ତ୍ରଣ କରାଗଲା ।

ଗୋମତୀ ନଦୀ ତଟରେ ଥିବା ନୈମିଷାରଣ୍ୟରେ ଯଜ୍ଞଶାଳା ନିର୍ମାଣ କରାଗଲା । ଶ୍ରୀରାମଙ୍କ ମାତାମାନେ ଓ ପରିବାରର ଅନ୍ୟମାନେ ସେଠାକୁ ଆସିଲେ । ବହୁତ ଖାଦ୍ୟ ସାମଗ୍ରୀ, ନବବସ୍ତ୍ର, ସୁବର୍ଣ୍ଣ, ଇତ୍ୟାଦି ମଧ୍ୟ ସେଠାକୁ ଅଣାଗଲା । ରାଜାମାନଙ୍କର ଯେପରି କିଛି ଅସୁବିଧା ନ ହୁଏ ସେକଥା ଭରତ ବୁଝୁଥା'ନ୍ତି । ସେମାନେ ମଧ୍ୟ ଶ୍ରୀରାମଙ୍କ ପାଇଁ ବହୁ ଉପହାର ଆଣି ଆସିଥା'ନ୍ତି । ଇତିମଧ୍ୟରେ ଭରତ ସୀତାଙ୍କର ଅନୁରୂପ ଏକ ସୁବର୍ଣ୍ଣ ପ୍ରତିମା ଗଠନ କରି ଶ୍ରୀରାମଙ୍କ ଯଜ୍ଞ ପାଇଁ ଆଣିଥା'ନ୍ତି । ଯଜ୍ଞପଶୁକୁ ଅଭିମନ୍ତ୍ରିତ କରି ଛାଡ଼ି ଦିଆଗଲା । ତାହା ସହିତ ଲକ୍ଷ୍ମଣ ଓ ଅନ୍ୟ ସେନାପତିମାନେ ଗଲେ ।

ଯଜ୍ଞ ଅତି ଆନନ୍ଦ ପୂର୍ବକ ଆରମ୍ଭ ହେଲା । ଯିଏ ଯାହା ଚାହୁଁଥା'ନ୍ତି ତାହା ତାଙ୍କୁ ତତ୍‌କ୍ଷଣାତ୍ ମିଳୁଥାଏ । ସ୍ୱର୍ଣ୍ଣ, ବସ୍ତ୍ର, ଧନ, ରତ୍ନ, ଧେନୁ, ସବୁ କିଛି ବହୁତ ଦାନ ଦିଆ ଯାଉଥାଏ । ବିଶିଷ୍ଟ ଲୋକମାନେ କହୁଥାନ୍ତି କି ଏପରି ଯଜ୍ଞ ଇନ୍ଦ୍ର, କୁବେର ମଧ୍ୟ କରିନାହାନ୍ତି । ପ୍ରିୟ ବାନରଗଣ ଓ ରାକ୍ଷସଗଣ ସଦା ସର୍ବଦା ସେବା କାର୍ଯ୍ୟରେ ଲାଗି ରହିଥା'ନ୍ତି । ଏହିପରି ଭାବରେ ଯଜ୍ଞ ବର୍ଷେ ଚାଲି ସମ୍ପନ୍ନ ହେଲା ।



# ବୈଦ୍ୟ ବିଦ୍ୟା

ଲାଠିପୁରର ବୀରଗୃର୍ଯ୍ୟ ଜଣେ ବୈଦ୍ୟ ଭାବରେ ବିଶେଷ ଖ୍ୟାତି ଅର୍ଜ୍ଜନ କରିଥିଲେ । ତାଙ୍କର ପ୍ରଦୀପ ନାମରେ ଜଣେ ଶିଷ୍ୟ ଥାଏ । ଦିନେ ପ୍ରଦୀପ ବୀରଗୃର୍ଯ୍ୟଙ୍କୁ ପଚାରିଲା, "ମହାଶୟ, ଆପଣଙ୍କ ମତରେ କେଉଁ ପ୍ରକାର ରୋଗୀକୁ ଚିକିତ୍ସା କରିବା ସବୁଠାରୁ କଠିନ ?"

"ପ୍ରଦୀପ, ସବୁଠାରୁ କଠିନ ହେଉଛି ମୂର୍ଖ ଲୋକଙ୍କର ଚିକିତ୍ସା କରିବା । ସେ କ୍ଷେତ୍ରରେ ବୁଦ୍ଧି ଖର୍ଚ୍ଚ କରି ସାବଧାନ ହୋଇ ଚିକିତ୍ସା କରିବାକୁ ହୁଏ । ତାଙ୍କୁ ଯାହା କରିବାକୁ କୁହାଯାଏ ସେମାନେ ଠିକ୍ ଭାବରେ ବୁଝି ନପାରି ଭିନ୍ନ ଭାବରେ କାର୍ଯ୍ୟ କରନ୍ତି । ଫଳ ହୁଏ ଓଲଟା ।" ବୀରଗୃର୍ଯ୍ୟ କହିଲେ । ଠିକ୍ ଏହି ସମୟରେ ବେଣୁ ନାମକ ଜଣେ ବ୍ୟକ୍ତି ଦେହ ହାତ କୁଣ୍ଡାଇ ହେଉ ହେଉ ସେଠାରେ ଆସି ପହଞ୍ଚିଲା ଓ କହିଲା, "ବୈଦ୍ୟ ମହାଶୟ, ଗତବର୍ଷ ଆପଣ ମୋତେ ଶର୍ଦ୍ଦିଜ୍ୱର ପାଇଁ ଔଷଧ ଦେଇ କହିଥିଲେ ସ୍ନାନ ନ କରିବାକୁ । ମୁଁ ସେହିଦିନଠୁ ଭୟରେ ସ୍ନାନ କରେ ନାହିଁ କାଳେ ଜର ହୋଇଯିବ ବୋଲି । କିନ୍ତୁ ଦେହସାରା ମୋର କାଛୁ କୁଣ୍ଡିଆରେ ଭର୍ତ୍ତି । ମୁଁ ବହୁତ କଷ୍ଟ ସହିଲଣି । ଏବେ କିଛି ଔଷଧ ଦିଅନ୍ତୁ ।"

ବୀରଗୃର୍ଯ୍ୟ ତାକୁ ଔଷଧ ଦେଇ ପ୍ରତିଦିନ ସ୍ନାନ କରିବାକୁ କହି ବିଦା କଲେ ଓ ପରେ ପ୍ରଦୀପକୁ କହିଲେ, "ଦେଖ, ଇଏ ଗୋଟିଏ ମୂର୍ଖ ଲୋକ । ତାକୁ ଥଣ୍ଡାଜର ପାଇଁ ସ୍ନାନ ନ କରିବାକୁ କହିଥିଲି; ଆଉ ସେ ଜର ଭୟରେ ସ୍ନାନ ନ କରି କାଛୁକୁଣ୍ଡିଆରେ ରୋଗ ଭୋଗୁଛି । ତେଣୁ ଏପରି ଲୋକଙ୍କର ଚିକିତ୍ସା କରିବାବେଳେ ସାବଧାନ ହେବାକୁ ହୁଏ ।"





# ବନ୍ଧୁତା

ଭୂଷଣ ପାତ୍ର ନରପୁର ଗ୍ରାମରେ ଗୁଡଲ ବ୍ୟବସାୟ କରି ଖୁବ୍ ପଇସା ରୋଜଗାର କରିଥାଏ । ସେହି ଗ୍ରାମରେ ସାଗର ଦାସ ନାମକ ଜଣେ ବ୍ୟକ୍ତି ଗୃହବାସ କରି ଚଳୁଥାଏ । ଦୁହେଁ ପିଲାବେଳରୁ ବନ୍ଧୁ । କିନ୍ତୁ ଆର୍ଥିକ ଅବସ୍ଥା ଦୃଷ୍ଟିରୁ ଦେଖିଲେ ଦୁହିଁଙ୍କ ମଧ୍ୟରେ ପାର୍ଥକ୍ୟ ବହୁତ ବେଶି । ପୁଣି ଗତ ବର୍ଷ ଫସଲ ନ ହେବାରୁ ସାଗରର ଘରେ ବହୁତ ଅଭାବ ଦେଖାଦେଲା । କିନ୍ତୁ ଭୂଷଣର ବ୍ୟବସାୟ ଅଧିକରୁ ଅଧିକ ବଢ଼ି ଚାଲିଥାଏ ।

ଦିନେ ସାଗର ଅନନ୍ୟୋପାୟ ହୋଇ ଭୂଷଣ ପାଖରେ ଯାଇ ପହଞ୍ଚି କହିଲା, "ଭାଇ, ଯଦି କିଛି ମୂଳଧନ ଧାର୍ ଦେବ ତେବେ, କିଛି ବ୍ୟବସାୟ କରି ଚଳିଯା'ନ୍ତି ।"

"ଆଚ୍ଛା, କି ବ୍ୟବସାୟ କରିବ ?" ଭୂଷଣ ପଚାରିଲା ।

"କାହିଁକି ? ଗୁଡଲ ବ୍ୟବସାୟ ।"

"ଗୁଡଲ ବ୍ୟବସାୟ ? କେଉଁଠି କରିବ ? ଆମ ଗାଁରେ ନା ଅନ୍ୟ କେଉଁଠି ?" ଭୂଷଣ ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

"ଅନ୍ୟ କେଉଁଠି କାହିଁକି ?" ଏଇ ଗାଁରେ କରିବ ।" ସାଗର କହିଲା ।

ଭୂଷଣ କିଛି ଚିନ୍ତା କଲା ପରେ କହିଲା, "ଦେଖ ଭାଇ, ତମେ ତ ମୋର ବନ୍ଧୁ । ତମ ଘରେ ଅସୁବିଧା ପଡ଼ୁଛି ତ ଅଳ୍ପ କିଛି ଟଙ୍କା ମୁଁ ଧାର୍ ଦେଉଛି, କିଛିଦିନ ସେଥିରେ ଚଳିଯିବ । କିନ୍ତୁ ବ୍ୟବସାୟ ପାଇଁ ମୂଳଧନ ଦେବାକୁ ମୋର ଆର୍ଥିକ ସମ୍ବଳ ନାହିଁ । ମୁଁ ସେଥିପାଇଁ ଦୁଃଖିତ ।"

ସାଗର ଏକଥା ଶୁଣି ମନେ ମନେ ଦୁଃଖିତ ହୋଇ କହିଲା, "ଯେବେ ମୂଳଧନ ଦେଇ ନ ପାରିବ ତେବେ ଅଳ୍ପ କିଛି ସାହାଯ୍ୟ

ନରହରି

ମୋର ଦରକାର ନାହିଁ ।" ତା'ପରେ ସେ ସେଠାରୁ ଚାଲି ଆସିଲା ।

ସାଗରର କିଛିଦିନ ଆର୍ଥିକ ସଙ୍କଟ ମଧ୍ୟରେ କଟିଗଲା । ପୁଣି ନୂଆ ବର୍ଷକୁ ନୂଆ ଫସଲରୁ କିଛି ଟଙ୍କା ପାଇଲା । କିନ୍ତୁ ପରିବାରରେ ଏବେ ଆଉ ଗୋଟିଏ ନୂଆ ସମସ୍ୟା । ସାଗରର ଉମା ବୋଲି ଗୋଟିଏ ବିବାହ-ଯୋଗ୍ୟା କନ୍ୟା ଥାଏ । ତା'ର ବିବାହ ପାଇଁ ବହୁତ ଭଲ ଭଲ ପ୍ରସ୍ତାବ ସବୁ ଆସୁଥାଏ । କିନ୍ତୁ ଯୌତୁକ ଓ ବିବାହ ଖର୍ଚ୍ଚ ପାଇଁ ଯଥେଷ୍ଟ ପଇସା ନ ଥିବାରୁ ସେ କାହାକୁ କଥା ଦେଇ ପାରୁ ନଥାଏ । ଗୋଟିଏ ଖୁବ୍ ସୁନ୍ଦର ପ୍ରସ୍ତାବ ଆସିଥାଏ । ବାହାଘରରେ ଦଶହଜାର ଟଙ୍କା ଖର୍ଚ୍ଚ ହେବ । ଏତେ ଟଙ୍କା ଧାର୍ ଦେବାବାଲା ଲୋକ ସେ ଗ୍ରାମରେ ଭୂଷଣ ଛଡ଼ା ଦ୍ୱିତୀୟ କେହି ନଥିଲେ ।

ଝିଅର ବିବାହ କଥା ଭାବି ଭାବି ସାଗର ପ୍ରାୟ ଆହାରନିଦ୍ରା ଛାଡ଼ି ଦେଇଥାଏ କହିଲେ ଚଳେ । ତାକୁ ଏତେ ବ୍ୟସ୍ତ ଚିନ୍ତିତ ଦେଖି ତା' ସ୍ତ୍ରୀ ଦିନେ ତାକୁ କହିଲା ଶେଷ ଚେଷ୍ଟା ହିସାବରେ ଥରେ ଭୂଷଣ ପାଖକୁ ଯିବାକୁ । ପୂର୍ବ ଘଟଣା ମନେପଡ଼ି ସାଗର କେବଳ ଦୀର୍ଘଶ୍ୱାସ ଛାଡ଼ିଲା । କିନ୍ତୁ ସ୍ତ୍ରୀର ଅନୁରୋଧ ଓ ନିଜର ଆର୍ଥିକ ସଙ୍କଟ କଥା ଭାବି ଶେଷକୁ ସେ ଭୂଷଣ ପାଖକୁ ଯିବାକୁ ମନସ୍ଥ କଲା ।

ପରଦିନ ସେ ଭୂଷଣ ପାଖରେ ପହଞ୍ଚି ସବୁକଥା କହିଲା । ଭୂଷଣ ସବୁ ଶୁଣି କହିଲା, "ଆରେ ସାଗର, ତମର କ'ଣ ଆମ ବନ୍ଧୁତା



ଉପରେ ବିଶ୍ୱାସ ନାହିଁ ? ତମର ଆଗରୁ ମୋ ପାଖକୁ ଆସିବା ଉଚିତ ଥିଲା । ଉମା କ'ଣ ମୋ ଝିଅ ନୁହେଁ ?" ଏତିକି କହି ସେ ଘର ଭିତରକୁ ଯାଇ ବିଡ଼ାଏ ନୋଟ ଆଣି ସାଗର ହାତରେ ଦେଇ କହିଲା, "ନିଅ ଏ ପନ୍ଦର ହଜାର ଟଙ୍କା । ବିବାହ ଭଲ ଭାବରେ କର ।"

"ମୋର ତ ଦଶହଜାର ଟଙ୍କା ଦରକାର ଥିଲା ।" ସାଗର ଆଶ୍ଚର୍ଯ୍ୟ ହୋଇ କହିଲା ।

"ସେକଥା ସତ ଯେ ତେବେ ଖର୍ଚ୍ଚବାର୍ଚ୍ଚ ଦଶହଜାର ଦେବା ପରେ ବି ଅନୁସଙ୍ଗିକ ଖର୍ଚ୍ଚ ସବୁ ପାଇଁ କ'ଣ ଟଙ୍କା ଦରକାର ପଡ଼ିବ ନାହିଁ ? ଏ ପାଞ୍ଚ ହଜାର ଉମା ପାଇଁ ଉପହାର ସ୍ୱରୂପ ମୁଁ ଦେଲି ।" ଭୂଷଣ କହିଲା ।

ସାଗର ଅତି ଖୁସି ମନରେ ଟଙ୍କାତକ ଧରି ଘରକୁ ଫେରିଲା । ସାଗର ଯିବା ପରେ ଭୂଷଣର ସ୍ତ୍ରୀ ଆଶ୍ଚର୍ଯ୍ୟ ହୋଇ ପଚାରିଲା, "ଗତଥର ତୁମ ବନ୍ଧୁଙ୍କ ବ୍ୟବସାୟ ପାଇଁ ଧାର ଦେବାକୁ ମନା କରିଦେଲ । ଏବେ ତାଙ୍କର ଦରକାରଠାରୁ ଆହୁରି ଅଧିକ ପାଞ୍ଚ ହଜାର ଦେଲ । ଏ କିପରି କଥା ?"

ଭୂଷଣ କହିଲା, "ଗତଥର ସାଗର ବ୍ୟବସାୟ ପାଇଁ ଟଙ୍କା ଚାହୁଁଥିଲା । ତମେ ଜାଣ ସେ କି ବ୍ୟବସାୟ କରିବାକୁ ଚାହୁଁଥିଲା? ଗୁଡ଼ର ବ୍ୟବସାୟ: ପୁଣି ଏଇ ଗାରେ । ତା' ମାନେ ବ୍ୟବସାୟରେ ସେ ମୋର ଏକମାତ୍ର ପ୍ରତିଦ୍ୱନ୍ଦୀ ହେବାକୁ ଯାଉଥିଲା ! ଆଉ ତମେ ଭାବୁଛ ସେଥିପାଇଁ ମୁଁ ତାକୁ ଟଙ୍କା ଦେଇଥା'ନ୍ତି ?"

"କିନ୍ତୁ ଏବେ କିମିତି ଏତେ ଟଙ୍କା ସାହାଯ୍ୟ କଲ ?" ପ୍ରଭା ବିସ୍ମିତ ହୋଇ ପଚାରିଲେ ।

"ଏ କ୍ଷେତ୍ରରେ ମୁଁ ବନ୍ଧୁ ଭାବରେ ବନ୍ଧୁର ସହାୟତା କରିଛି । ତା'ର ଝିଅ ମୋ'ର ଝିଅ ପରି । ମୋ ଭିତରର ପ୍ରକୃତ ବନ୍ଧୁ ଏଠାରେ ସହାୟତା କରିଛି; ବ୍ୟବସାୟୀ ଭୂଷଣ ନୁହେଁ । ଏବେ ତୁମେ ବୁଝି ପାରୁଛ ?" ହସି ହସି କହିଲା ଭୂଷଣ ।





# ଜାମାତା ନିର୍ବାଚନ

[ ୭ ]

ପ୍ରିୟମ୍ବଦା ଜୟ ବିଜୟଙ୍କୁ କହିଲେ, "ମୁଁ ତୁମ ଭିତରୁ ଜଣକୁ ବିବାହ କରିବାକୁ ପ୍ରସ୍ତୁତ କିନ୍ତୁ ଏହି ସର୍ତ୍ତରେ ଯେ ତୁମେ ରାଜଦୀପକୁ ହରାଇ ଦେବ।" ସର୍ତ୍ତ ଶୁଣିବା ପରେ ଜୟ ବିଜୟ ଗଜଦୀପ ସହିତ କୁସ୍ତି କରିବାକୁ ସମୟ ନିର୍ଦ୍ଧାରଣ କଲେ।

କୁସ୍ତି ଆରମ୍ଭ ହେବା ପୂର୍ବରୁ ରାଜଦୀପ କହିଲା, "ଦେଖ, ମୁଁ ଜଣ ଜଣ କରି କାହିଁକି କୁସ୍ତି ଲଢ଼ିବି? ବରଂ ଏକାବେଳେ ଦୁଇଜଣଙ୍କ ସହିତ କୁସ୍ତି ଲଢ଼ିବି।" ରାଜଦୀପର ପ୍ରସ୍ତାବରେ ଦୁହେଁ ଖୁସି ହୋଇଗଲେ। କୁସ୍ତି ଆରମ୍ଭ ହେଲା। କିଛି ସମୟ ପରେ ଦେଖାଗଲା ଯେ କୁସ୍ତିରେ ରାଜଦୀପ ହାରିଗଲା। ରାଜଦୀପର ପରାଜୟ ଦେଖି ପ୍ରିୟମ୍ବଦା ନିରାଶ ହୋଇଗଲେ। ଏବେ ଉପାୟ କ'ଣ? ଜୟ ବିଜୟ ଆସି ପ୍ରିୟମ୍ବଦାଙ୍କୁ କହିଲେ, "ଏବେ କୁହ ଆମ ଦୁହିଁଙ୍କ ମଧ୍ୟରୁ ତୁମେ କାହାକୁ ବିବାହ କରିବ।

ପ୍ରିୟମ୍ବଦା କହିଲେ, "ପ୍ରଥମେ ନିର୍ଣ୍ଣୟ କର ତୁମ ଦୁହିଁଙ୍କ ମଧ୍ୟରେ କିଏ ଅଧିକ ଶକ୍ତିଶାଳୀ? ଯଦି ନିଜେ ନିର୍ଣ୍ଣୟ ନ କରି ପାରିବ ତେବେ ତୁମ ପିତାମାତାଙ୍କୁ ଯାଇ ପଚାର।"

ଦୁହେଁ ଯାଇ ନିଜ ନିଜର ପିତାଙ୍କ ନିକଟରେ ଆପଣାର ପ୍ରଶ୍ନ ପ୍ରକାଶ କଲେ। ଦୁଇ ପିତା ମହା ଅଡୁଆରେ ପଡିଲେ।

ବଡ଼ ମୁଖିଆ କହିଲେ, "ଦେଖ, ମୋ ପୁଅ ଜୟ ବଡ଼। ମୋର ଧନ ସମ୍ପତ୍ତି ଅଧିକ ଅଛି! ସେହିଁ ପ୍ରିୟମ୍ବଦାକୁ ବିବାହ କରିବ।"

"ଢସୂନ୍ଦିରୀ"



ସାନ ମୁଖିଆ କହିଲେ, "ଏ ପର୍ଯ୍ୟନ୍ତ ଏ ସମସ୍ୟା ଆମ ମଧ୍ୟରେ ନଥିଲା । ଆମ ଭିତରେ ପ୍ରକୃତରେ କିଏ ଧନୀ ଓ ଆମ ପୁଅମାନଙ୍କ ଭିତରେ କିଏ ବଡ଼ ଓ ଶକ୍ତିଶାଳୀ ସେକଥା କେହି ଜାଣେ ନାହିଁ । ଏବେ ମୁଁ ତୁମ କଥା ମାନିଗଲେ ସାରା ଜୀବନ ମୋ ପୁଅ ତୁମ ପୁଅଠାରୁ ସାନ ହୋଇ ରହିବ । ସେକଥା ମୁଁ କିପରି ସହିବି ?"

ଦୁଇ ମୁଖିଆଙ୍କ ମଧ୍ୟରେ ଭେଦଭାବ ଦେଖା ଦେବା ଏହାହିଁ ପ୍ରଥମ । ସେମାନେ ଏପରି ମଧ୍ୟ ଭାବିଲେ, ଦୁହିଁଙ୍କ ମଧ୍ୟରେ ମତଭେଦ କରାଇବାକୁ ରାଜଦୀପ ଏ ଷଡ଼ଯନ୍ତ୍ର କରାଇ ନାହିଁ ତ ?"

ତା'ପରେ ଦୁଇ ମୁଖିଆ ଯାଇ ରାଜଦୀପ ପାଖରେ ପହଞ୍ଚିଲେ ଏହାର ସମାଧାନ ପାଇଁ । ରାଜଦୀପ ସବୁ ଶୁଣି କହିଲା, "ଦେଖନ୍ତୁ ଏସବୁ ଆରମ୍ଭ ହୋଇଛି ପ୍ରିୟମ୍ବଦା ଯୋଗୁଁ । ସେହିଁ ସେ ଦୁହିଁଙ୍କୁ ମୋ ସହିତ ଲଢ଼ିବାକୁ କହିଲା । ଆପଣମାନଙ୍କ କଳହ ମଧ୍ୟ ତା'ରି ଯୋଗୁଁ ।"

ରାଜଦୀପର କଥା ଶୁଣି ବଡ଼ ମୁଖିଆ ରାଗିଯାଇ କହିଲା, "ଯାହା ହେବାର ହୋଇଛି । ପ୍ରିୟମ୍ବଦାର ସେଥିରେ କିଛି ଦୋଷ ନାହିଁ । ତମେ ଚାହିଁଥିଲେ ଦୁହିଁଙ୍କୁ ଲଢ଼ାଇରେ ପରାଜିତ କରି ପାରିଥା'ନ୍ତ । ତମେ ଇଚ୍ଛାକରି ହାରିଛ । କାରଣ ତମେ ଦୁହିଁଙ୍କ ମଧ୍ୟରେ କଳହ ସୃଷ୍ଟି କରିବାକୁ ଚାହଁ ।"

ରାଜଦୀପ କହିଲା, "ହରି, ହରି ! ମୁଁ ସେ ଦୁହିଁଙ୍କ ମଧ୍ୟରେ ବନ୍ଧୁତା ସୁଦୃଢ଼ କରିବାକୁ ଚାହୁଁଛି, ଅଥଚ ଆପଣମାନେ ଏପରି କହୁଛନ୍ତି ? ମୁଁ କ'ଣ ସେପରି ନୀଚ କର୍ମ କରିଥିବି ବୋଲି ଆପଣମାନେ ଭାବୁଛନ୍ତି ?"

"ତେବେ ତମେ ସିଧା ସିଧା କୁହ, ତୁମେ କିପରି ଆମ ପୁଅମାନଙ୍କ ପାଖରେ ହାରିଗଲ ?" ସାନ ମୁଖିଆ ପଚାରିଲେ ।

"ମୁଁ ସତ କହୁଛି, ସେମାନେ ମୋତେ କୁସ୍ତି ଲଢ଼ାଇରେ ପରାଜିତ କରିଛନ୍ତି ।" ରାଜଦୀପ କହିଲା ।

"ଏକଥା ଆମେ କିପରି ବିଶ୍ୱାସ କରିବୁ ? ଆମେ ସବୁ ଦେଖିଥିବା ତୁମର ସେସବୁ ଶକ୍ତି



ଏବେ କୁଆଡ଼େ ଗଲ ?" ବଡ଼ ମୁଖିଆ ପଚାରିଲେ ।

ଏବେ ମୋ ଭିତରେ କୌଣସି ଶକ୍ତି ନାହିଁ । ସବୁ ଶକ୍ତି ନଷ୍ଟ ହୋଇ ଯାଇଛି । ତା'ର କାରଣ ପ୍ରିୟମ୍ବଦା । ସେ ଏହି ଗ୍ରାମରେ ପହଞ୍ଚି ପ୍ରଥମେ ମୋତେ ବିବାହ କରିବାକୁ କହିଲା । ମୋ ମନରେ କ୍ରମେ ସେହି ଇଚ୍ଛା ତୀବ୍ର ହେବାକୁ ଲାଗିଲା । ଏହା ନିଜ ସ୍ୱାର୍ଥ ପାଇଁ ଏକ ଇଚ୍ଛା । ତେଣୁ ମୋର ଶକ୍ତି ସବୁ ନଷ୍ଟ ହୋଇଗଲା । ମୋ ମନରେ ଏକମାତ୍ର ଇଚ୍ଛା ଯେ କେହି ମୋର ଅପକାର କଲେ ମଧ୍ୟ ମୁଁ ବି ଯେପରି ତା'ର ଉପକାର କରେ । କିନ୍ତୁ ଏବେ ମୋର ନିଃସ୍ୱାର୍ଥ କାର୍ଯ୍ୟ ମଧ୍ୟରେ ସ୍ୱାର୍ଥ ଆସି ରହିବାରୁ ସମସ୍ତ ଅଲୌକିକ ଶକ୍ତି ନଷ୍ଟ ହୋଇ ଯାଇଛି । ତେଣୁ ଆପଣମାନେ ଯଦି ଅନୁମତି ଦିଅନ୍ତି ତେବେ ମୁଁ ପ୍ରିୟମ୍ବଦାଙ୍କୁ ନେଇ ଏ ଗ୍ରାମରୁ ଚିରଦିନ ପାଇଁ ଦୂରକୁ ଚାଲିଯିବି ।" ରାଜଦୀପ କହିଲା ।

ରାଜଦୀପର କଥା ଶୁଣି ଦୁହେଁ ଅବାକ୍ ହୋଇଗଲେ । "ଆଚ୍ଛା ତମେ ଯାହା କହୁଛ ତାହା କ'ଣ ସତ୍ୟ? ଆମେ ଯଦି ଅପକାର କରୁଥିବା ଲୋକର ଉପକାର କରୁ ଓ ଖରାପ ଲୋକର ମଙ୍ଗଳ କାମନା କରୁ ତେବେ ଆମେ ଶକ୍ତିଶାଳୀ ହୋଇଯିବୁ ?" ଜଣେ ମୁଖିଆ ପଚାରିଲେ ।

"ନିଃସ୍ୱାର୍ଥ କାର୍ଯ୍ୟ ଯିଏ କରିବ ବା ଅନ୍ୟର ଉପକାର ବା ଅନ୍ୟକୁ ସାହାଯ୍ୟ କରିବ, ସେ ନିଶ୍ଚୟ ଶକ୍ତିଶାଳୀ ହୋଇ ଉଠିବ । ସ୍ୱାର୍ଥ ପଶିବା ମାତ୍ରେ ମଣିଷ ଶକ୍ତିହୀନ ହୋଇଥାଏ ।" ରାଜଦୀପ କହିଲା । ଦୁଇଜଣ ମୁଖିଆ ହଠାତ୍ ରାଜଦୀପ ପ୍ରତି ସ୍ନେହଶୀଳ ହୋଇ ଉଠିଲେ । ସେମାନେ ହାତ ଯୋଡ଼ି ପ୍ରଣାମ କରି ରାଜଦୀପକୁ କହିଲେ, "ଭାଇ, ତମେ ଆମଠୁ ବୟସରେ ବହୁତ ସାନ ହେଲେ ମଧ୍ୟ ଜ୍ଞାନରେ ବଡ଼ । ଆମେ ଅଜ୍ଞାନ ଓ ସ୍ୱାର୍ଥବଶତଃ ଏହି ଗ୍ରାମବାସୀଙ୍କର ଅନେକ ଅମଙ୍ଗଳ କରିଛୁ । ଆଜିଠାରୁ ଆମେ ସେମାନଙ୍କର ମଙ୍ଗଳ ପାଇଁ ସବୁ କାର୍ଯ୍ୟ ନିଃସ୍ୱାର୍ଥରେ ହୋଇ କରିବୁ ।"



ଆପଣମାନଙ୍କ ଭିତରେ ଯେଉଁ ପରିବର୍ତ୍ତନ ହୋଇଛି ତାହା ଅତ୍ୟନ୍ତ ମହାନ୍ । ଯେଉଁ କାମ ପାଇଁ ମୁଁ ଏ ଗ୍ରାମକୁ ଆସିଥିଲି ତାହା ଫଳବତୀ ହୋଇଛି । ଏବେ ଆପଣମାନେ ଆଶୀର୍ବାଦ ଦେଲେ ମୁଁ ପ୍ରିୟମ୍ବଦାଙ୍କୁ ନେଇ ଏଠାରୁ ଚାଲିଯିବି ।" ରାଜଦୀପ କହିଲା ।

ଦୁଇ ମୁଖିଆ ଘରକୁ ଫେରି ଦୁଇ ପୁଅଙ୍କୁ କହିଲେ, "ଏବେ ରାଜଦୀପ ମନରେ ସ୍ୱାର୍ଥବୁଦ୍ଧି ଆସିଛି । ସେ ପ୍ରିୟମ୍ବଦାଙ୍କୁ ବିବାହ କରିବାକୁ ଚାହେଁ । ତମେ ଦୁହେଁ ତା' କଥା ଭୁଲିଯାଅ । ସେ ପ୍ରିୟମ୍ବଦାଙ୍କୁ ନେଇ ଏଠାରୁ ଚାଲିଯାଉ ।"

"ନା ନା, ତା' କପରି ହେବ?" ଜୟ ଓ ବିଜୟ ରାଗିଯାଇ କହିଲେ ।

"ଆଚ୍ଛା? ଆଜିକାଲି ତୁମେ ଦୁହେଁ ଅତ୍ୟନ୍ତ ଉଦ୍ଧତ ହୋଇଗଲଣି । ତୁମର ଜିଦ୍ ଆଉ ବରଦାସ୍ତ କରାଯିବ ନାହିଁ । ଆମେ ପ୍ରିୟମ୍ବଦା ଓ ରାଜଦୀପଙ୍କୁ ସମ୍ମାନର ସହ ବିବାହ କରାଇ ଏ ଗ୍ରାମରୁ ବିଦାୟ ଦେବୁ ।" ଜଣେ ମୁଖିଆ ରାଗିଯାଇ କହିଲେ ।

ଏବେ ଜୟ ରାଗି ଉଠି କହିଲା, "ଆପଣମାନେ ଯାହା ଚାହିଁବେ ତାହା ହେବ ନା କ'ଣ? ଆଉ ଆମେ ଚୁପ୍‌ଚାପ୍ ସହି ଯିବୁ? ଅସମ୍ଭବ । ଏବେ ଆପଣମାନେ ବୁଢ଼ା । ଚୁପ୍ ହୋଇ ଘରେ ବସନ୍ତୁ । ଗ୍ରାମର କୌଣସି କଥାରେ ପାଟି ଫିଟାଇଲେ ବା ଘରୁ ବାହାରକୁ ଆସିଲେ ଆପଣଙ୍କ ଗୋଡ଼ ଭାଙ୍ଗି ଦେବୁ । ଏବେ ଆମେ ଦୁହେଁ ମୁଖିଆ ।"

"କ'ଣ ଏବେ ଠିକ୍ ବୁଝିପାରୁଛ ତ?" ବିଜୟ କହିଲା ।

ତା'ପରେ ଦୁଇ ବୁଢ଼ା ଘରେ ବନ୍ଦୀ ହୋଇ ରହିଲେ । ଗ୍ରାମରେ ହୁଲସ୍ଥୂଲ ପଡ଼ିଗଲା । ଗ୍ରାମରେ ଜୟ ବିଜୟଙ୍କ ଅତ୍ୟାଚାର ବୃଦ୍ଧି ପାଇବାକୁ ଲାଗିଲା ।

ଦିନେ ରାଜଦୀପ ଦୁହିଁଙ୍କ ପାଖକୁ ଯାଇ କହିଲା, "ଯେଉଁ ଯୁବତୀ ତୁମକୁ ପସନ୍ଦ କରୁନାହିଁ ତାକୁ ଓ ଗୁରୁଜନମାନଙ୍କୁ କଷ୍ଟ ଦିଅନାହିଁ ।"

ଦୁହେଁ ରାଗିଯାଇ କହିଲେ, "କ'ଣ ତମେ ଉପଦେଶ ଦେବାକୁ ଆସିଛ? ଆମେ ଯାହା

କରୁଛୁ ଆମ ଇଚ୍ଛା । ତୁମକୁ ଯେ ଏପର୍ଯ୍ୟନ୍ତ ଆମେ କଷ୍ଟ ଦେଇନାହୁଁ ସେଇଟା ତୁମର ଭାଗ୍ୟ । ଏବେ ସାତଦିନ ମଧ୍ୟରେ ଏ ଗ୍ରାମ ଛାଡ଼ି ନ ଗଲେ ତମେ ଆଉ ପ୍ରାଣ ମଧ୍ୟ ପାଇବ ନାହିଁ, ବୁଝିଲେ ତ ?"

ରାଜଦୀପ ସେଠାରୁ ଯାଇ ଗ୍ରାମବାସୀଙ୍କୁ କହିଲା. "ଭାଇମାନେ, ଆପଣମାନଙ୍କ ଦୁଇ ମୁଖିଆ ଏବେ ବନ୍ଦୀ । ଆପଣମାନେ ତାଙ୍କୁ ରକ୍ଷା କରିବା ଉଚିତ୍ ନୁହେଁ ?"

ରାଜଦୀପର କଥା ଶୁଣି ସେମାନେ କହିଲେ, "ଏଇ ଦୁଇଜଣଙ୍କ ନାମ ଆଗରୁ ଥିଲା ଧୀର ଓ ବୀର । ସେମାନେ ଭଗବାନ୍ ବିଷ୍ଣୁଙ୍କ ଦ୍ୱାରପାଳ ଜୟ ବିଜୟ । ମୁନିଙ୍କ ଶାପ ଓ କାଳପୁରୁଷଙ୍କ ଇଚ୍ଛାରୁ ଏମାନେ ରାକ୍ଷସ ବୃତ୍ତି ନେଇ ଏ ଗାଁରେ ଜନ୍ମ ନେଇଛନ୍ତି ଆମ କର୍ମଫଳରୁ ।"

"କ'ଣ ସେମାନଙ୍କ ଅତ୍ୟାଚାରରୁ ମୁକ୍ତି ପାଇବାକୁ କିଛି ଉପାୟ ତୁମ ପୂର୍ବ ମୁଖିଆ-ମାନେ କହି ନାହାନ୍ତି ?" ରାଜଦୀପ ପଚାରିଲା ।

ଜଣେ ଗ୍ରାମବାସୀ କହିଲା, "ମୁଖିଆମାନେ କହିଥିଲେ ଯେ ମହାବିଷ୍ଣୁ ଆସି ଏମାନଙ୍କ ଅତ୍ୟାଚାରରୁ ଗ୍ରାମକୁ ରକ୍ଷା କରିବେ ।"

"ମୁଁ ହିଁ ସେହି ମହାବିଷ୍ଣୁ । ପ୍ରିୟମ୍ବଦା ହେଉଛନ୍ତି ସାକ୍ଷାତ୍ ଲକ୍ଷ୍ମୀ । ରାମାୟଣ ସମୟର ବାନରମାନଙ୍କ ଅଂଶରେ ତୁମେ ସବୁ ଜନ୍ମ ନେଇଛ । ଆଜି ଲକ୍ଷ୍ମୀ ଜୟ ବିଜୟଙ୍କ ହାତରେ ବନ୍ଦୀ । ଆମେ ସମସ୍ତେ ମିଶି ଜୟ ବିଜୟଙ୍କୁ ଅବଶ୍ୟ ହରାଇ ଦେବା । ତମେ ସମସ୍ତେ ସେମାନଙ୍କ ଅତ୍ୟାଚାରରୁ ମୁକ୍ତ ହେବ ।"

"ତୁମେ ମହାବିଷ୍ଣୁ ଏହାର ପ୍ରମାଣ କ'ଣ ? ଯେତେ ପର୍ଯ୍ୟନ୍ତ ବଡ଼ ମୁଖିଆମାନେ ନ କହୁଛନ୍ତି ଆମେ ତ ବିଶ୍ୱାସ କରିପାରିବୁ ନାହିଁ ।" ସମସ୍ତେ ଏକ ସ୍ୱରରେ କହିଲେ ।

"ଆଚ୍ଛା ତମେ ସମସ୍ତେ ଯାଇ ମୋର ସମ୍ମୁଖରେହିଁ ତାହା ବଡ଼ ମୁଖିଆମାନଙ୍କୁ ପଚାର ।" ରାଜଦୀପ କହିଲା ।





# ପରୀକ୍ଷା

ପାଟନାରେ ଜଣେ ଗରିବ ବ୍ୟକ୍ତି ଥାଏ । ତା' ନାମ ମୋହନ ଦାସ । ସେ ବହୁତ କଷ୍ଟରେ ଚଳୁଥାଏ । ଘରେ ଏକମାତ୍ର ଝିଅ ରାଜପ୍ରଭା । ପରିବାର ବୋଲି ଆଉ କେହି ନଥା'ନ୍ତି । ଦିନେ ବିଚାରି ମୋହନ ଭାବିଲା ରାଜାଙ୍କ ପାଖକୁ ଯାଇ ନିଜର ଦୁଃଖ ଜଣାଇବ । ରାଜା କହିଲେ, "ତମେ ଯଦି ମୋର ଚାରୋଟି ପ୍ରଶ୍ନର ଉତ୍ତର ଦେଇ ପାରିବ ତେବେ ମୁଁ ତୁମକୁ ପୁରସ୍କାର ସ୍ୱରୂପ କିଛି ଜମିବାଡ଼ି ଦେବି । ପ୍ରଶ୍ନ ଗୁଡ଼ିକ ହେଲା ସବୁଠାରୁ ବେଗବାନ୍ ବସ୍ତୁ କିଏ? ସବୁଠାରୁ ଶକ୍ତିଶାଳୀ କ'ଣ? ସବୁଠାରୁ କୋମଳ ବସ୍ତୁ କ'ଣ? ଏବଂ ସବୁଠାରୁ ଆନନ୍ଦପ୍ରଦ ଜିନିଷ କ'ଣ? ଦିନକ ଭିତରେ ସଠିକ୍ ଉତ୍ତର ଦେଇ ପାରିଲେ ତୁମର ପ୍ରାର୍ଥନା ପୂରଣ ହେବ ।"

ବିଚାରି ମୋହନ ଦାସ ଘରକୁ ଦୁଃଖ ମନରେ ଫେରିଲା । ଉତ୍ତର ଦେବା ତା' ପାଇଁ ଅସମ୍ଭବ । ତଥାପି ବହୁତ ଭାବି ଚାଲିଥାଏ ଘରେ ବାପାର ଏହି ଅବସ୍ଥା ଦେଖି ଝିଅ ପଚାରିଲା, "ଆଜି ଏତେ ଅନ୍ୟ ମନସ୍କ ଓ ବ୍ୟସ୍ତ ଥିବାପରି ଜଣା ଯାଉଛ?"

ମୋହନ ଦାସ କହିଲା, "ଝିଅ, ମୁଁ କିଛି ସାହାଯ୍ୟ ମାଗିବାକୁ ରାଜାଙ୍କ ପାଖକୁ ଯାଇଥିଲି । ସେ ମୋତେ କହିଲେ ଚାରିଟି ପ୍ରଶ୍ନର ଉତ୍ତର ଦେଲେ ସେ ମୋତେ ସାହାଯ୍ୟ କରିବେ । ମୁଁ ପ୍ରଶ୍ନ ସବୁର କୌଣସି ଉତ୍ତର ନ ପାଇବାରୁ ମୋ ମନ ବଡ଼ କଷ୍ଟ ।"

ରାଜପ୍ରଭା ବାପାଙ୍କଠାରୁ ପ୍ରଶ୍ନ ଗୁଡ଼ିକ ଶୁଣିବା ପରେ ହସି ହସି କହିଲା, "ଏଇ ପାଇଁ ତମେ ଏତେ ବ୍ୟସ୍ତ ହେଉଛ? ସବୁଠାରୁ ବେଗବାନ୍ ବସ୍ତୁ ହେଉଛି ମନ, କିନ୍ତୁ ବାହ୍ୟ ଜଗତରେ ତାହା ହେଉଛି ପବନ । ସବୁଠାରୁ ଶକ୍ତିଶାଳୀ ହେଉଛି ମନ, କିନ୍ତୁ ବାହ୍ୟ ଜଗତରେ

ପଚିଶବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ

ଦେଖିଲେ ପୃଥିବୀ । ସବୁଠାରୁ କୋମଳ ହେଉଛି ମନ, କିନ୍ତୁ ବାହ୍ୟ ଭାବରେ ଦେଖିଲେ ମଣିଷର ହାତ ସବୁଠାରୁ କୋମଳ । କାରଣ ଯେତେ କୋମଳ ବିଛଣା ଉପରେ ଶୋଇଲେ ମଧ୍ୟ ମଣିଷ ତା' ହାତଟିକୁ ମୋଡ଼ି ମୁଣ୍ଡତଳେ ରଖେ । ପୁଣି ସବୁଠାରୁ ଆନନ୍ଦଦାୟକ ବସ୍ତୁ ମଧ୍ୟ ମନ । ଅନ୍ତର ଆନନ୍ଦଠାରୁ ଆଉ ଅଧିକ ଆନନ୍ଦ ନାହିଁ । କିନ୍ତୁ ବାହ୍ୟ ଭାବରେ ଦେଖିଲେ ତାହା ହେଉଛି ନିଦ୍ରା । ନିଦ୍ରାରେ ମଣିଷ ସମସ୍ତ ଦୁଃଖ କଷ୍ଟ ଭୁଲିଯାଏ ଓ ମହା ଆନନ୍ଦରେ ଓ ନିଶ୍ଚିନ୍ତରେ ଶୋଇଥାଏ ।"



ପରଦିନ ମୋହନ ଦାସ ରାଜାଙ୍କୁ ଭେଟି ସବୁ ପ୍ରଶ୍ନ ଗୁଡିକର ଉତ୍ତର ଦେଲା । ରାଜା ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ଉତ୍ତର ତୁମ ନିଜ ବୁଦ୍ଧିରୁ ଦେଇଛ ?"

"ମହାରାଜ, ମୋ ଉତ୍ତର ଗୁଡ଼ିକ ଅବଶ୍ୟ ମୁଁ ମୋ ଝିଅ ରାଜପ୍ରଭାର ବୁଦ୍ଧି ଯୋଗୁ ଦେଇ ପାରିଛି ।" ମୋହନ ଦାସ କହିଲା ।

ରାଜା ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "କ'ଣ ତୁମ ଝିଅ ଏତେ ବୁଦ୍ଧିମତୀ ? ତେବେ ଏହି ସୂତାକୁ ନେଇ ତୁମ ଝିଅକୁ ଦେଇ କୁହ ଯେ କାଲି ଭିତରେ ଏହି ସୂତାରେ ସେ ଏକ ଜରି ଉତ୍ତରୀୟ ମୋ ପାଇଁ ବୁଣିଦେବ ।" ଏତକ କହି ସେ କିଛି ସୂତା ମୋହନ ଦାସକୁ ଦେଲେ ।

ମୋହନ ଦାସ ନିରାଶ ହୋଇ ସୂତାତକ ଧରି ଘରକୁ ଫେରିଲା । ବାପାଙ୍କର ମୁହଁକୁ ଚାହିଁ ଝିଅ ଆଶ୍ଚର୍ଯ୍ୟ ହୋଇ ପଚାରିଲା, "ବାପା. ତମେ ପୁଣି କାହିଁକି ଏତେ ଚିନ୍ତିତ ଦେଖାଯାଉଛ ?"

"ଝିଅ, ରାଜା ପୁଣି ଏକ ପରୀକ୍ଷାରେ ମୋତେ ପକାଇଛନ୍ତି । ଏହି ସୂତାରେ ତୁ କାଲି ଭିତରେ ଏକ ଜରି ଉତ୍ତରୀୟ ବୁଣି ଦେବାକୁ ହେବ ।" ମୋହନ ଦାସ କହିଲା ।

"ବାପା, ଇଏ ବା କେଉଁ କଥା ? ତମେ ଝାଡୁ ଦେହରୁ ଗୋଟିଏ ଝୁଣ୍ଟୁକାକାଠି ନେଇ ରାଜାଙ୍କୁ ଦେବ ଓ କହିବ ସେଥିରେ ସେ ତନ୍ତ ଓ କଣ୍ଡା ତିଆରି କରି ଦେଲେ ମୁଁ ଏଇ ସୂତାରେ ତାଙ୍କ ପାଇଁ ଏକ ଉତ୍ତରୀୟ ବୁଣି ଦେବ ନିଶ୍ଚୟ ।" ରାଜପ୍ରଭା କହିଲା ।

ମୋହନ ଦାସ ଝୁଣ୍ଟୁଳାକାଠିଟିଏ ନେଇ ରାଜାଙ୍କ ପାଖରେ ଝିଅ କହିଥିବା କଥା କହିଲା । ରାଜା ଅବାକ୍ ହୋଇଯାଇ କହିଲେ, "ବାଃ, ତୁମ ଝିଅ ତ ବଡ଼ ବୁଦ୍ଧିମତୀ! ଆଜି ମୁଁ ତୁମକୁ କିଛି କୁକୁଡ଼ା ଅଣ୍ଡା ଦେଉଛି । ଝିଅକୁ କହିବ କାଲି ସୁଦ୍ଧା ସେ ଅଣ୍ଡାକୁ ଉତ୍ତମ କରି ଫୁଟାଇ କୁକୁଡ଼ା ଛୁଆ ପଠାଇ ଦେବ ।"

ଅଗତ୍ୟା ଅଣ୍ଡାଗୁଡ଼ିକ ଧରି ଚିନ୍ତାମଗ୍ନ ହୋଇ ମୋହନ ଦାସ ଆସି ଘରେ ପହଞ୍ଚିଲା । ରାଜପ୍ରଭା ଅଣ୍ଡାଗୁଡ଼ିକ ନେଇ ରାନ୍ଧିଲା । ପରଦିନ ସେ କହିଲା, "ବାପା, ଏବେ ଯାଇ ରାଜାଙ୍କୁ କୁହ ଯେ ଅଣ୍ଡାଗୁଡ଼ିକ ଫୁଟି ଛୁଆ ହୋଇ ଯାଇଛନ୍ତି । ଦିନକ ମଧ୍ୟରେ ଫଳିଥିବା ଧାନ ଚାଉଳ କରି ସେ ଶୀଘ୍ର ପଠାଇ ଦିଅନ୍ତୁ । ନହେଲେ ଛୁଆ ଗୁଡ଼ିକ ମରିଯିବେ ।"

ମୋହନ ଦାସ ରାଜାଙ୍କୁ ଯାଇ ଏକଥା କହିବା ମାତ୍ରେ ରାଜା ଖୁସି ହୋଇ କହିଲେ, "ମୁଁ କିଛି ସମୟ ପରେ ତୁମ ଘରକୁ ଆସୁଛି ।"

ରାଜପ୍ରଭା ରାଜାଙ୍କୁ ସ୍ୱାଗତ କରିବା ପାଇଁ ବାହାରେ ଠିଆ ହୋଇଥାଏ । କିନ୍ତୁ ଗୋଟିଏ ପାଦ ଘରେ ଓ ଅନ୍ୟ ପାଦ ବାହାରେ ଥାଏ । ଏହି ସମୟରେ ରାଜା ଆସି ପହଞ୍ଚିଲେ । କିନ୍ତୁ ସେ ଘୋଡ଼ାରୁ ନ ଓହ୍ଲାଇ ସୁନ୍ଦରୀ ରାଜପ୍ରଭାକୁ ଚାହିଁ କହିଲେ, "ରାଜପ୍ରଭା, ମୁଁ ଘୋଡ଼ାରୁ ଓହ୍ଲାଇ ତୁମ ଘରକୁ ଯିବି ନା ନ ଓହ୍ଲାଇ ଆଗକୁ ଯିବି ?"

"ମହାରାଜ, ଆପଣ ଉଚ୍ଚବଂଶ ସମ୍ଭୂତ, ଅଧିକ ବୁଦ୍ଧିମାନ ଓ ଅଧିକ ଶିକ୍ଷିତ । ଆପଣ ପ୍ରଥମେ କୁହନ୍ତୁ ମୁଁ ବାହାରୁ ଭିତରକୁ ଯାଉଛି ନା ଭିତରୁ ବାହାରକୁ ଯାଉଛି ? ଏ ଉତ୍ତର ଶୁଣିବା ପରେ ମୁଁ ଆପଣଙ୍କ ପ୍ରଶ୍ନର ଉତ୍ତର ଦେବି ।"

ରାଜା ଖୁବ୍ ଖୁସି ହେଲେ । ସେ ଘୋଡ଼ାରୁ ଓହ୍ଲାଇ ତାଙ୍କ ଘରକୁ ଗଲେ ଓ ମୋହନ ଦାସଙ୍କୁ ସ୍ୱର୍ଣ୍ଣ ମୋହରରେ ଭର୍ତ୍ତି ଏକ ଥଳୀ ଦେଲେ । କିଛିଦିନ ପରେ ରାଜା ବୁଦ୍ଧିମତୀ ରାଜପ୍ରଭାକୁହିଁ ବିବାହ କଲେ ।



# ପ୍ରକୃତିର ବିସ୍ମୟ!

## ଅକ୍ଟୋପାଶର ଗଳ୍ପ!



ଅକ୍ଟୋପାଶ ନାମକ ଏକ ସାମୁଦ୍ରିକ ଜୀବ ନିଜର ମୁଣ୍ଡରେ ଥିବା ଆଠଟି ଲମ୍ବା ଲମ୍ବା ନଳୀ ପରି ପାଦ ସାହାଯ୍ୟରେ ପାଣିରେ ପହଁରି ପହଁରି ଯାଏ । ଅନ୍ୟ ପ୍ରାଣୀଟିଏ ନିକଟରେ ପାଇଲେ ସେ ତାହାର ଆଠଟି ପାଦ ଦ୍ୱାରା ତାକୁ କାବୁ କରିନେଇ ରକ୍ତ ଶୋଷି ଖାଏ ।

## ମାଛର ଅଦ୍ଭୁତ ବୁଦ୍ଧି

ପୂର୍ବ ଓ ପଶ୍ଚିମ ଏସିଆରେ ଏକ ପ୍ରକାର ମାଛ କୂଳରେ ଥିବା ଘାସ ଓ ଜଳ ପ୍ରଭୃତିରେ ଥିବା ଛୋଟ ଛୋଟ କୀଟ ପତଙ୍ଗଙ୍କୁ ନିଜ ମୁହଁରୁ ଜଳର ପିଚକାରୀ ଜୋର୍‌ରେ ମାରନ୍ତି । ସେମାନେ ଝଡ଼ପଡ଼ ପାଣିରେ ପଡ଼ିଲେ ତାକୁ ଧରି ଖାନ୍ତି ।





ଆଜୀବନ ବନ୍ଧୁତ୍ୱ

ବକର୍ ନାମକ ଏକ ପ୍ରକାର ମୂଷା, ଯଦି ଅନ୍ୟ କୌଣସି ଜନ୍ତୁ ସହିତ ବନ୍ଧୁତା କରେ ତେବେ ସାରା ଜୀବନ ସେ ତାକୁ ଛାଡ଼େ ନାହିଁ । ବକର୍‌ର ଛୁଆମାନେ ମଧ୍ୟ ବଡ଼ ହେଲେ ମା'ବାପାଙ୍କ ଆଖପାଖରେ ଘର ବନାଇ ରହନ୍ତି । ଛୁଆଢ଼େ ଦୂରକୁ ପଳାନ୍ତି ନାହିଁ ।

# ଜହ୍ନମାମୁଁ

ଆଲୋକ ଓ ଆନନ୍ଦର ମାସିକ ପତ୍ରିକା



* ଭାରତର ପ୍ରାଚୀନ କାହାଣୀମାଳା ସହିତ ନୂତନ କାହାଣୀମାଳାର ଅପୂର୍ବ ସମନ୍ୱୟ ।
* ସରଳ ଓ ସଂଯତ ଭାଷାର ପ୍ରକୃଷ୍ଟ ଉଦାହରଣ—ଜହ୍ନମାମୁଁ ।
* ହାସ୍ୟରସ ସହ ମାନବିକତା ଓ ନୀତିଶିକ୍ଷାରେ ସମୃଦ୍ଧ ପତ୍ରିକା—ଜହ୍ନମାମୁଁ ।
* ଜହ୍ନମାମୁଁ କେବଳ ଶିଶୁ ବା କିଶୋରମାନଙ୍କ ପତ୍ରିକା ନୁହେଁ, ପରିବାରର ସମସ୍ତେ ଏହା ଉପଭୋଗ କରନ୍ତି ।
* ସାଧାରଣଜ୍ଞାନର ଭଣ୍ଡାର—ଜହ୍ନମାମୁଁ ।
* ଇଂରାଜୀ ଓ ସଂସ୍କୃତ ସମେତ ତେରଗୋଟି ଭାଷାରେ ପ୍ରକାଶିତ ଏ ପତ୍ରିକା ଭାରତର ଏକତାର ପ୍ରତୀକ ।

'ଜହ୍ନମାମୁଁ' ପଢ଼ନ୍ତୁ ଓ ପଢ଼ାନ୍ତୁ ।

ବାର୍ଷିକ ଦେୟ : ଟ ୩୦-୦୦



'ଜହ୍ନମାମୁଁ'ର ଗ୍ରାହକ ହେବା ନିମନ୍ତେ ଆପଣଙ୍କ ପୂରା ଠିକଣା ସହ ମନିଅର୍ଡର ତଳ ଠିକଣାକୁ ପଠାନ୍ତୁ :

## ଡଲ୍ଟନ୍ ଏଜେନ୍ସିଜ୍

ଚନ୍ଦାମାମା ବିଲ୍ଡିଙ୍ଗ୍ସ୍,

ବଡପଳନୀ, ମାଡ୍ରାସ-୬୦୦୦୨୬

# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ.୫୦

ପୁରସ୍କୃତ ପରିଚୟୋକ୍ତି ନଭେମ୍ବର ୧୯୮୭ ସଂଖ୍ୟାରେ ପ୍ରକାଶ ପାଇବ



M. Natarajan



V. M. Omar

★ ଉଭୟ ଫଟୋ ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଶବ୍ଦ ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ସେପ୍ଟେମ୍ବର ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର । ★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ । ★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

## ଜୁଲାଇ '୮୭ ପ୍ରତିଯୋଗିତାର ଫଳ

ପ୍ରଥମ ଫଟୋ : ପାହାଡ଼ ଚଢୁଛୁଁ ମୁଣ୍ଡରେ ବୋଝ !

ଦ୍ୱିତୀୟ ଫଟୋ : ପାହାଚ ଚଢ଼ିବା କେଡ଼େ ମଜା !!

ପୁରସ୍କାର ବିଜୟୀ : କୁଞ୍ଜ ବିହାରୀ ଦାଶ, ବସ୍ତା ।

ବିଜୟୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।


# ଜହ୍ନ ମାମୁଁ

ବାର୍ଷିକ ଦେୟ : ଟ. ୩୦-୦୦

ମନିଅର୍ଡର ପଠାଇବା ଠିକଣା :

ଡଲ୍ଟନ୍ ଏଜେନ୍ସିଜ୍, ଚନ୍ଦାମାମା ବିଲ୍ଡିଂସ୍, ବଡ଼ପଳନୀ, ମାଡ୍ରାସ-୬୦୦୦୨୬

ବିଦେଶ ସମ୍ବନ୍ଧେ ଦେୟ ବିବରଣୀ ପାଇଁ ନିମ୍ନ ଠିକଣାକୁ ଲେଖନ୍ତୁ :

ଚନ୍ଦାମାମା ପବ୍ଲିକେଶନ୍ସ, ଚନ୍ଦାମାମା ବିଲ୍ଡିଂସ, ବଡ଼ପଳନୀ, ମାଡ୍ରାସ-୬୦୦୦୨୬

Printed by B.V. REDDI at Prasad Process Private Ltd., 188 N.S.K. Salai, Madras 600 026 (India) and Published by B. VISHWANATHA REDDI on behalf of CHANDAMAMA PUBLICATIONS, Chandamama Buildings, Vadapalani, Madras 600 026 (India). Controlling Editor: NAGI REDDI.


---

# Treat yourself to something special!

## Big BON BONs from nutrine

Tasty, creamy, fruity delights
In four delicious flavours




**GREAT NEW BON BONS**
**from nutrine,**
***naturally!***

MILK CREAM
LEMON COCONUT
FRUITY • CHOCOMINT




nutrine
**BON BON**



nutrine India's largest selling sweets

Nutrine Confectionery Company Private Limited, Chittoor, A.P.